# ବାମଣ୍ଡା ଇତିହାସ

ବାଳକୃଷ୍ଣ କର





ପୂର୍ବତନ ଗଡ଼ଜାତ

# ବାମଣ୍ଡା ଇତିହାସ

(୧୨୦୦ ରୁ ୧୯୪୭ ମସିହା)

ବାଳକୃଷ୍ଣ କର

ସୁଖ୍‌ଦୁଖ୍ ପବ୍ଲିକେଶନ, ସମ୍ବଲପୁର

ବାମଣ୍ଡା ଇତିହାସ
ବାଳକୃଷ୍ଣ କର
**ପ୍ରକାଶକ**
ସୁଖ୍‌ଦୁଖ୍ ପବ୍ଲିକେଶନ
ଆଶିଆନା, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଗଳି, ସମ୍ବଲପୁର ୭୬୮୦୦୧ ଓଡ଼ିଶା
ଫୋନ୍ ୦୬୬୩-୨୫୩୨୮୭୨ ମେଲ୍ sukhdukh@sancharnet.in
**ପ୍ରଚ୍ଛଦ**
ଗୌରାଙ୍ଗ ମିତ୍ର, ଗେଲେକ୍ସି କମ୍ପ୍ୟୁଟର୍ସ, ସମ୍ବଲପୁର
**ମୁଦ୍ରଣ**
ଇମ୍‌ପ୍ରେସନ୍‌ସ୍, ସମ୍ବଲପୁର
**ପ୍ରଥମ ପ୍ରକାଶ**
ନଭେମ୍ବର ୧୩, ୨୦୦୬ (ପ୍ରଥମାଷ୍ଟମୀ)
**ମୂଲ୍ୟ**
ପଞ୍ଚସ୍ତରୀ ଟଙ୍କା ମାତ୍ର

<u>ପ୍ରଚ୍ଛଦ ପଟ୍ଟଚିତ୍ର</u>

| | |
|---|---|
| ସମ୍ମୁଖ ଭାଗ | ବାମଣ୍ଡା ମାନଚିତ୍ର |
| | ବାମଣ୍ଡା ରାଜ ପ୍ରାସାଦ ଓ ସଭାଗୃହ |
| ପୃଷ୍ଠ ଭାଗ | ପ୍ରଧାନପାଟ ଜଳପ୍ରପାତ |

***Bamanda Itihas*(Oriya)** Balakrushna Kar **Publisher** Sukh Dukh Publication, Ashiana, Pandit Laxmi Narayan Mishra Lane, Sambalpur 768 001 Orissa Phone: 0663-2532872 Mail: sukhdukh@sancharnet.in **Cover** Gouranga Mitra, Galaxy Computers, Sambalpur **Printed at** Impressions, Sambalpur **First Edition** November 13, 2006 (Prathamastami) **Price** Rs. 75/- only.

**ISBN 81- 902499- 2- 4**

# ଉତ୍ସର୍ଗ

ବାମଣ୍ଡା ଗଡ଼ଜାତର ରାଜଧାନୀ ଦେବଗଡ଼ରେ

ଜନ୍ମ ନେଇଥିବା ମୋ ସହଧର୍ମିଣୀ

ତଥା ସୁଖ ଦୁଃଖର ସାଥୀ

ପ୍ରିୟତମା 'ପ୍ରମିଳା'ଙ୍କୁ

ଓ

ମୋ ସମସ୍ତ ନାତି ନାତୁଣୀ

ଗର୍ଗୀ, ରୁବି, ଲୋରୀ, ଫାଗୁନ୍, ରୁଚି ,ସାବନ୍, ଅନୁ

ତଥା

ଏକ ବିଂଶ ଶତାବ୍ଦୀର ପରିବର୍ତ୍ତିତ

ରାଜନୈତିକ ଓ ସାମାଜିକ ଜୀବନର ସଂସ୍ପର୍ଶରେ ଆସୁଥିବା

ମୋ ପରିବାରର କନିଷ୍ଠା ସଭ୍ୟା

ଯାହା ପକ୍ଷେ ଅତୀତ ଗଡ଼ଜାତର ଶାସନ ଓ ସମାଜ

କାଳ୍ପନିକ ଗଳ୍ପ ସଦୃଶ

ସେଇ ଟିକି ନାତୁଣୀ 'ଆନା'କୁ

*ବାଳକୃଷ୍ଣ*

# ମୁଖବନ୍ଧ

ଐତିହାସିକ ତଥ୍ୟ ଅନୁସାରେ ଓଡ଼ିଶାରେ ଗଙ୍ଗ ବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗ ଦେବ (ଚୋଳଗଙ୍ଗ ଦେବ / ଚୂଡ଼ଙ୍ଗ ଦେବ / ଅନନ୍ତ ବର୍ମା ନାମାନ୍ତର) ରାଜତ୍ୱ କାଳ (୧୦୭୭ - ୧୧୪୨) ରେ ତାଙ୍କର ବଂଶୀୟ ଭ୍ରାତାମାନେ ଦକ୍ଷିଣ ଓ ପଶ୍ଚିମ ଅଞ୍ଚଳରେ ରାଜତ୍ୱ କରୁଥିଲେ। କଳାହାଣ୍ଡି, ପାଟଣାଗଡ଼ ପଶ୍ଚିମାଞ୍ଚଳର ଅନ୍ତର୍ଭୁକ୍ତ। କଳାହାଣ୍ଡିର ଜଣେ ଗଙ୍ଗବଂଶୀୟ ରାଜା ନାଗବଂଶୀୟ ଜଣେ ରାଜାଙ୍କୁ ଜାମାତା ଭାବରେ ଗ୍ରହଣ କରି ତାଙ୍କ ହାତରେ ରାଜ୍ୟଭାର ଅର୍ପଣ କରି ତୀର୍ଥାଟନରେ ଯାତ୍ରା କଲେ। ମାତ୍ର ତାଙ୍କର ପ୍ରତ୍ୟାବର୍ତ୍ତନ ପରେ ଉକ୍ତ ରାଜା ତାଙ୍କୁ ରାଜ୍ୟଭାର ପ୍ରତ୍ୟର୍ପଣ ନ କରି ରାଜ୍ୟରୁ ବିତାଡ଼ିତ କଲେ।

ଏହି ସମୟରେ ପାଟଣାରେ ଯେଉଁ ଗଙ୍ଗବଂଶୀୟ ରାଜା ରାଜତ୍ୱ କରୁଥିଲେ ତାଙ୍କର ବଂଶାନୁକ୍ରମିକ ୫/୬ ଜଣ ରାଜାଙ୍କ ଶାସନ ପରେ 'ହଟ୍ଟହମିର ଦେବ'ନାମକ ଜନୈକ ରାଜା ରାଜତ୍ୱ କରୁଥିଲେ। ରମାଇ ଦେବ ନାମକ ଜଣେ ଚୌହାନବଂଶୀୟ ରାଜା ତାଙ୍କୁ ଯୁଦ୍ଧରେ ପରାସ୍ତ କରି ରାଜ୍ୟ ଅଧିକାର କଲେ।

ଏହି ସମୟରେ ବାମଣ୍ଡା ନିବିଡ଼ ଅରଣ୍ୟ ପରିବେଷ୍ଟିତ, ଆଦିବାସୀ ଅଧ୍ୟୁଷିତ, ହିଂସ୍ରଜନ୍ତୁସଂକୁଳ ଗ୍ରାମ ବିଶେଷ ଥିଲା। ତାହା ଉପଯୁକ୍ତ ପ୍ରଶାସନ ଅଭାବରେ ବିଶୃଙ୍ଖଳିତ ହୋଇ ପଡ଼ିଥିଲା। ତାର ଉପଯୁକ୍ତ ପ୍ରଶାସନ ନିମିତ୍ତ 'କଟଙ୍ଗପାଣି' ଗ୍ରାମର ସୁନାକନ୍ଧ ଓ 'କେଳିପଦର' ଗ୍ରାମର କଣ୍ଟାରଭୂୟାଁ ପଦବ୍ରଜରେ ଯାଇ "ହଟ୍ଟହମିର ଦେବଙ୍କ ପୁତ୍ର ସରଯୁଦେବ"ଙ୍କୁ ଡ଼ାକି ଆଣି 'ଟିକିଲିପଡ଼ା' ଗ୍ରାମର କାଣ୍ଡସର ମୁହାଣସ୍ଥିତ ଶରବଣରେ ଅଭିଷେକୋତ୍ସବ ପାଳନ କରି ସରଯୁଦେବ ନାମ ପ୍ରଦାନ କଲେ। ଏହି ସରଯୁଦେବ ବାମଣ୍ଡାରେ ପ୍ରତିଷ୍ଠିତ ଗଙ୍ଗବଂଶର ପ୍ରଥମ ରାଜା। ତାଙ୍କ ପରେ ପରେ ଏକାଦିକ୍ରମେ ୨୯ ଜଣ ରାଜା ବାମଣ୍ଡା ରାଜସିଂହାସନରେ ବିଭିନ୍ନ ସମୟରେ ଅଧିରୁଢ଼ ହୋଇ ରାଜନୈତିକ, ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ ଓ ଆଧାତ୍ମିକ କ୍ଷେତ୍ରରେ ବିକାଶ ସାଧନ କଲେ।

ଓଡ଼ିଶା ୧୮୦୩ ଖ୍ରୀ.ରେ ବ୍ରିଟିଶ ଶାସନାଧୀନ ହେଲା। ୧୮୨୬ ଖ୍ରୀ.ରେ ବାମଣ୍ଡା ଇଂରେଜ ମାନଙ୍କଠାରୁ ନୂତନ ସନନ୍ଦ ଲାଭ କରି କରଦ ରାଜ୍ୟ (Tributory State) ହେଲା। ମାତ୍ର ୨୬ ତମ ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବଙ୍କ ରାଜତ୍ୱକାଳରେ (୧୮୩୧-୧୮୬୮) ପ୍ରଶାସନିକ ଦକ୍ଷତା ତଥା ପରାକାଷ୍ଠା ବଳରେ ଏହା ସାମନ୍ତ ରାଜ୍ୟ (Feudatory State) ରୂପେ ପରିଗଣିତ ହେଲା। ଏହାର ରାଜା ସାମନ୍ତ ରାଜା (Feudatory Chief) ରୂପେ ପ୍ରଭୂତ କ୍ଷମତାଶାଳୀ ଥିଲେ।

x x x x

ସେତେବେଳେ 'ରାଜ ପ୍ରତିନିଧି' (Political Agent) ଙ୍କ ଦ୍ୱାରା ଗଡ଼ଜାତମାନ ଶାସିତ ହେଉଥିଲେ। କହିବାବାହୁଲ୍ୟ ଯେ ୧୯୦୩ ଖ୍ରୀ.ରେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ଓ ୧୯୦୫ ଖ୍ରୀ.ରେ ଭାଷା ଆନ୍ଦୋଳନରେ ଦେବଗଡ଼ରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର "ସମ୍ବଲପୁର ହିତୈଷିଣୀ"ର ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ ଥିଲା। ୧୯୦୫ ଖ୍ରୀ.ରେ ବାମଣ୍ଡା କେନ୍ଦ୍ରରୁ ପୃଥକ୍ ହେଲା ଓ ଓଡ଼ିଶା ଡ଼ିଭିଜନ୍‌ରେ ସାମିଲ ହେଲା। ପୂର୍ବରୁ ପ୍ରତିଷ୍ଠିତ ପୂର୍ବ ଗଡ଼ଜାତ ମଣ୍ଡଳ (Eastern State Agency) ୨୬ଟି ଦେଶୀୟ ରାଜ୍ୟ ମଧ୍ୟରେ ବାମଣ୍ଡା ଅନ୍ୟତମ।

ସଂପ୍ରତି କାଳରେ ସମ୍ବଲପୁରର ବନ୍ଦୋବସ୍ତ ଅଧିକାରୀ ଏଚ୍.ମେକ୍‌ଫରସନ୍ ସାହେବ ଥିଲେ। ସେ ବାମଣ୍ଡାର ତତ୍ତ୍ୱାବଧାରକ (Superintendent) ରୂପେ ପ୍ରଶାସନ କାର୍ଯ୍ୟ ୧୯୨୨ ଅଗଷ୍ଟ

ମାସରୁ ନିର୍ବାହ କଲେ । ତାଙ୍କ ପ୍ରଶାସନ କାଳରେ 'ରାଜସ୍ୱ ଆଇନ' (୧୯୨୯) ଏକ ଉଲ୍ଲେଖନୀୟ ଘଟଣା, ଯାହା ଫଳରେ ଭୂବନ୍ଦୋବସ୍ତ ଏକ ନୂତନ ରୂପରେଖ ଗ୍ରହଣ କଲା ।

ଗଙ୍ଗବଂଶର ୩୦ତମ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ ୧୯୩୫ ମସିହା ଜାନୁଆରୀ ୧୭ ତାରିଖରେ ବାମଣ୍ଡା ରାଜ ସିଂହାସନରେ ଅଭିଷିକ୍ତ ହେଲେ । ସେ ୧୯୪୭ ମସିହା ଡ଼ିସେମ୍ବର ମାସ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ ସମ୍ପାଦନ କଲେ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା ପରେ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ ଗଡ଼ଜାତ ମିଶ୍ରଣ ଏକ ଅପୂର୍ବ ଘଟଣା - ସମସ୍ତ 'ଖ' ଓ 'ଗ' ଶ୍ରେଣୀଭୁକ୍ତ ରାଜ୍ୟମାନେ ତା.୧୪.୧୨.୧୯୪୭ ପୂର୍ବାହ୍ନରେ କ୍ଷମତା ହସ୍ତାନ୍ତର କଲେ । ମାତ୍ର 'କ' ଶ୍ରେଣୀଭୁକ୍ତ ରାଜ୍ୟମାନେ ମିଶ୍ରଣରେ ସାମିଲ ହେଲେ (ବାମଣ୍ଡା 'କ' ଶ୍ରେଣୀଭୁକ୍ତ ରାଜ୍ୟ) ଡ଼ିସେମ୍ବର ୩୧ ତାରିଖ ମଧରାତ୍ରିରେ । ପ୍ରଥମେ ଜଣେ ଲେଖାଏଁ ପ୍ରଶାସକ (Administrator) ନିଯୁକ୍ତ ହେଲେ । କେ.ସି. ଦାସ ବାମଣ୍ଡାର ପ୍ରଥମ ପ୍ରଶାସକ ରୂପେ ତା ୧.୧.୧୯୪୮ରୁ କାର୍ଯ୍ୟ ସମ୍ପାଦନ କଲେ ।

"ବାମଣ୍ଡା ଇତିହାସ" ଏକ ଶ୍ରେଷ୍ଠ ଐତିହାସିକ ଦଲିଲ । ବିଶିଷ୍ଟ ଲେଖକ ଶ୍ରୀଯୁକ୍ତ ବାଳକୃଷ୍ଣ କର ବହୁ ପୁସ୍ତକ ଅଧ୍ୟୟନ / ଅନୁଶୀଳନ ପୂର୍ବକ ଅନେକ ଜ୍ଞାତବ୍ୟ ତଥ୍ୟର ଅବତାରଣାରେ ସାମର୍ଥ୍ୟ ପ୍ରକଟନ କରିପାରିଛନ୍ତି । ଯହିଁରେ ବାମଣ୍ଡା ଗଡ଼ଜାତର ଆବିର୍ଭାବ କାଳରୁ ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ତ୍ରୟୋଦଶ ଶତାବ୍ଦୀର ପୂର୍ବାର୍ଦ୍ଧରୁ ବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧ ପର୍ଯ୍ୟନ୍ତ (୧୨୦୦ ରୁ ୧୯୪୭) ନିମ୍ନୋକ୍ତ ବିଭିନ୍ନ ପ୍ରସଙ୍ଗରେ ଏକ ସମ୍ୟକ୍ ପରିଚୟ ପ୍ରଦତ୍ତ ହୋଇଛି । ପୁସ୍ତକର ବିଷୟବସ୍ତୁକୁ ବିନ୍ୟାସ କଲେ ଆଠଟି ପ୍ରସଙ୍ଗ ପରିଲକ୍ଷିତ ହୁଏ । ଯଥା:- ପ୍ରଥମ ଭାଗ ପୂର୍ବାଭାସରେ ୨୬ ଗଡ଼ଜାତ ମଧ୍ୟରେ ଅନ୍ୟତମ ବାମଣ୍ଡାର ସୀମା, ଆଦିବାସୀ ତଥା ଜନଜାତିର ରହଣୀ / ଚଳଣୀର ସଂକ୍ଷିପ୍ତ ଆଭାସ । ତାପରେ ବଂଶାନୁକ୍ରମେ ପ୍ରଥମ ଅନୁଚ୍ଛେଦରେ ବାମଣ୍ଡା ରାଜତନ୍ତ୍ରର ପ୍ରତିଷ୍ଠା ଓ ବଂଶାନୁକ୍ରମିକ ଶାସନର ସମ୍ୟକ୍ ପରିଚୟ ପ୍ରଦତ୍ତ । ଦ୍ୱିତୀୟ ଅନୁଚ୍ଛେଦରେ ବାମଣ୍ଡାର ସାମାଜିକ ଓ ଅର୍ଥନୈତିକ ସ୍ଥିତି, ତୃତୀୟ ଅନୁଚ୍ଛେଦରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଝଲକ ଓ ଦ୍ୱିତୀୟ ସଂଗ୍ରାମର ବିସ୍ତୃତ ଆଲୋଚନା କରାଯାଇଛି । ଦ୍ୱିତୀୟ ଭାଗର ପ୍ରଥମ ଅନୁଚ୍ଛେଦରେ ବାମଣ୍ଡାରେ ଆଧୁନିକ ଶିକ୍ଷାର ପ୍ରଚଳନ ପ୍ରସଙ୍ଗରେ କେତେକ ତଥ୍ୟର ଅବତାରଣା, ଦ୍ୱିତୀୟରେ ସାରସ୍ୱତ ସାଧନା ଅନୁଚ୍ଛେଦରେ ସାଂସ୍କୃତିକ ବିପ୍ଳବର ସଂକ୍ଷିପ୍ତ ଆଲୋଚନା, ତୃତୀୟ ଅନୁଚ୍ଛେଦରେ ବାମଣ୍ଡାରେ ପାଳିତ ପର୍ବପର୍ବାଣି ଓ ଓଷାବ୍ରତ ପ୍ରସଙ୍ଗରେ ବାମଣ୍ଡାର କେତେକ ବିଶିଷ୍ଟ ପର୍ବ ତଥା କୁଚିଣ୍ଡାରେ ପାଳିତ ପର୍ବର ସୂକ୍ଷ୍ମାଭାସ ପ୍ରଦତ୍ତ । ଚତୁର୍ଥ ଅନୁଚ୍ଛେଦରେ ପର୍ଯ୍ୟଟକଙ୍କ ଭୂସ୍ୱର୍ଗ ବାମଣ୍ଡା ପ୍ରସଙ୍ଗରେ ଶ୍ରେଷ୍ଠ ପ୍ରାକୃତିକ ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ, 'ପ୍ରଧାନପାଟ' ପ୍ରପାତର ସାହିତ୍ୟିକ ଅଭିନିବେଶ ତଥା ପର୍ଯ୍ୟଟନ ପୀଠସ୍ଥଳୀର ମାହାତ୍ମ୍ୟ ବର୍ଣ୍ଣିତ ।

ସମଗ୍ର ପୁସ୍ତକଟି ଅନୁଧ୍ୟାନ କଲେ ଜଣାଯାଏ ଯେ ଏହା 'ଅଖୋଜ ବାମଣ୍ଡା' ତଥା ପରବର୍ତ୍ତୀ କାଳରେ 'ଉତ୍କଳର ଉଜ୍ଜୟନୀ' 'ବୁଧ-ହଂସ-କେଳିସର' ବାମଣ୍ଡାର ଏକ ଶ୍ରେଷ୍ଠ ରାଜନୈତିକ, ସାମାଜିକ, ସାଂସ୍କୃତିକ ତଥାଐତିହାସିକ ବିବରଣୀର ଏକ ସ୍ୱଚ୍ଛ ପରିଚୟ ପ୍ରଦାନ କରିବାରେ ସମର୍ଥ । ଏହି ପରିପ୍ରେକ୍ଷୀରେ ପୁସ୍ତକଟି ଐତିହାସିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହେତୁ ଜନାଦୃତି ଲାଭ କରିବ ବୋଲି ଆଶା । ତେଣୁ ଶ୍ରୀଯୁକ୍ତ କର ଏ ପ୍ରକାର ପ୍ରଶଂସନୀୟ ସାଧୁ ଉଦ୍ୟମ ନିମିତ୍ତ ବିଶେଷ ଧନ୍ୟବାଦାର୍ହ । ତାଙ୍କର ଲେଖନୀ ଯଶସ୍ୱୀ ହେଉ ।

ମହାଳୟା (୨୨/୯/୨୦୦୬)
ଗୋବିନ୍ଦଟୋଲା

ଅଳମତି ବିସ୍ତରେଣ
ଡ଼କ୍ଟର ରାମଚନ୍ଦ୍ର ବ୍ରହ୍ମା
ଅବସରପ୍ରାପ୍ତ ଅଧ୍ୟକ୍ଷ

# କୃତଜ୍ଞତା ସ୍ୱୀକାର

ସମ୍ମାନାସ୍ପଦ ଶ୍ରୀଯୁକ୍ତ ବାଳକୃଷ୍ଣ କର ତାଙ୍କର "ବାମଣ୍ଡା ଇତିହାସ" ପୁସ୍ତକର ପାଣ୍ଡୁଲିପି ଅଧ୍ୟୟନ କରିବାର ସୁଯୋଗ ଦେଇଥିବାରୁ ମୁଁ କୃତଜ୍ଞତା ସ୍ୱୀକାର କରୁଛି। ଶ୍ରୀଯୁକ୍ତ କର ବାମଣ୍ଡାର ଇତିହାସ, ସାହିତ୍ୟ ଓ ସଂସ୍କୃତି ଉପରେ ଆଲୋକପାତ କରି ଏକ ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି। ଏଥିପୂର୍ବରୁ ବାମଣ୍ଡା ଇତିହାସ ପ୍ରଖ୍ୟାପନ ଛଳରେ କିଛି ଉଲ୍ଲେଖନୀୟ ଉଦ୍ୟମ ହୋଇଛି; ସେଗୁଡ଼ିକୁ ସସମ୍ମାନେ ସ୍ମରଣ କରାଯାଇପାରେ।

ବାମଣ୍ଡାର ମୁଖପତ୍ର 'ସମ୍ବଲପୁର ହିତୈଷିଣୀ' (୧୮୮୯-୧୯୨୩) ର ବିଭିନ୍ନ ସଂଖ୍ୟାରେ ବାମଣ୍ଡାର ଇତିହାସ କିମ୍ବଦନ୍ତୀ ଉପରେ କ୍ଷୀଣ ଆଲୋକପାତ ହୋଇଥିଲା। ମାତ୍ର ବିଧିବଦ୍ଧ ଭାବରେ ନିମ୍ନୋକ୍ତ କୃତି ସମୂହରେ ବାମଣ୍ଡାର ସାମଗ୍ରିକ ଆଲୋଚନା ଦୃଶ୍ୟମାନ ହୁଏ।

ପଲିଟିକାଲ ଏଜେଣ୍ଟ କବଡ଼େନ୍ ରାମସେଙ୍କ "Feudary States of Orissa" (୧୯୧୦) ପୁସ୍ତକରେ ବାମଣ୍ଡାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଅବସ୍ଥାର ସମ୍ୟକ୍ ଆଲୋଚନା କରାଯାଇଥିଲା।

୧୯୧୬ରେ ପ୍ରକାଶିତ ଚଣ୍ଡୀଚରଣ ବନ୍ଦୋପାଧ୍ୟାୟଙ୍କ ବଙ୍ଗଳା ଭାଷାରେ ରଚିତ "ସାର୍ ବାସୁଦେବ ଜୀବନୀ" ପୁସ୍ତକରେ ବାମଣ୍ଡାର ବିଷଦ ବିବରଣୀ ପ୍ରଦତ୍ତ ହୋଇଛି। ସୁଢ଼ଳଦେବଙ୍କ ସମୟ ତଥାକିଞ୍ଚିତ ପୂର୍ବବର୍ତ୍ତୀ ସମୟର ସାମଗ୍ରିକ ଚିତ୍ର ପ୍ରଦାନରେ ଉକ୍ତ ପୁସ୍ତକ ସଫଳ ହୋଇଛି। ସୁଢ଼ଳଦେବଙ୍କ ପ୍ରତିଭାର ମୂଲ୍ୟାୟନ ମାଧ୍ୟମରେ ସାମାଜିକ ଓ ସାରସ୍ୱତ ପୃଷ୍ଠଭୂମି ପର୍ଯ୍ୟାଲୋଚନାରେ ଏହି ପୁସ୍ତକ ପଥିକୃତ୍ ଉଦ୍ୟମ।

ଏହି ଦୁଇଟି ଐତିହାସିକ କୃତି ପୂର୍ବରୁ ବାମଣ୍ଡା ଇତିହାସକୁ ଗଣମୁଖୀ କରିବାରେ ବାମଣ୍ଡାର ତତ୍କାଳୀନ ଡ଼ାକ୍ତର ଲକ୍ଷ୍ମୀକାନ୍ତ ନାୟକଙ୍କ ରଚିତ "ବାମଣ୍ଡା ଦର୍ଶନ" (ସୁଢ଼ଳପ୍ରେସ୍ ୧୮୮୭) ଓ ବାମଣ୍ଡାର ଶିକ୍ଷକ ଜଗନ୍ନାଥ ପଟ୍ଟନାୟକଙ୍କ ରଚିତ "ବାମଣ୍ଡା ଭୂଗୋଳ ପାଠ" (୨ୟସଂ-ଜଗନ୍ନାଥବଲ୍ଲଭ ପ୍ରେସ୍ ୧୮୯୬) କୁ ସ୍ମରଣ କରାଯାଇପାରେ। ଏହି ଦୁଇଟି କ୍ଷୁଦ୍ର ପୁସ୍ତିକାରେ ବାମଣ୍ଡାର ରାଜବଂଶର ବିବରଣୀ ସହିତ ଭୌଗଳିକ ଅବତାରଣା କରାଯାଇଛି। ଏଗୁଡ଼ିକ ପ୍ରାଥମିକ ବିଦ୍ୟାଳୟର ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ। କିନ୍ତୁ ବାମଣ୍ଡା ଇତିହାସର ପ୍ରାଥମିକ ଉଦ୍ୟମ ରୂପେ ଏମାନଙ୍କୁ ସଶ୍ରଦ୍ଧ ସ୍ମରଣ କରିବା ଉଚିତ।

୧୯୭୭ରେ ବାମଣ୍ଡା ସାହିତ୍ୟର ଅବଦାନକୁ ପାଠକ ସମ୍ମୁଖରେ ଉନ୍ମୋଚନ କରିବାର ଆଭିମୁଖ୍ୟ ନେଇ ଅଧାପକ ରାମଚନ୍ଦ୍ର ବ୍ରହ୍ମାଙ୍କ "ଆଧୁନିକ ଓଡ଼ିଆ ସାହିତ୍ୟକୁ ବାମଣ୍ଡାର ଦାନ" ଶୀର୍ଷକ ପୁସ୍ତକ ପ୍ରସ୍ତୁତ। ଏଥିରେ ସଂକ୍ଷେପରେ ବାମଣ୍ଡାର ପୃଷ୍ଠଭୂମିର ବର୍ଣ୍ଣନା ସହିତ ସାହିତ୍ୟିକମାନଙ୍କ ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହୋଇଛି।

ଉଲ୍ଲିଖିତ ସୃଷ୍ଟି ସମୂହ ସୁଢ଼ଳଦେବଙ୍କ ପରବର୍ତ୍ତୀ ସମୟର ବାମଣ୍ଡା ଇତିହାସର ସମ୍ୟକ୍ ସୂଚନା ଦେବାରେ ମୁଖର। ଇତିହାସର ଅତଳ ଗହ୍ୱରରୁ ବାମଣ୍ଡାର ଇତିହାସକୁ ଆବିଷ୍କାର କରି ପରିବେଷଣ କରିବାର ପୀଡ଼ା ଏମାନେ ଉଠାଇନାହାଁନ୍ତି। ବାମଣ୍ଡାରେ ଗଙ୍ଗବଂଶ ପ୍ରତିଷ୍ଠା ପୂର୍ବ ଓ ପରର ଇତିହାସକୁ ଲେକାଭିମୁଖୀ କରିବାର ଆଭିମୁଖ୍ୟ ନେଇ ଶ୍ରୀଯୁକ୍ତ କରଙ୍କ ପୁସ୍ତକ ରଚିତ। ଏହି ନୂତନ ଆଲୋଚନାରେ ଲେଖକ ବାମଣ୍ଡାର ରାଜବଂଶ, ସାଂସ୍କୃତିକ ଅଭ୍ୟୁଦୟ, ଶିକ୍ଷା, ସାହିତ୍ୟ, ପର୍ବପର୍ବାଣୀ, ଭୌଗଳିକ ତଥ୍ୟ ସହିତ, ସ୍ୱାଧୀନତା ସଂଗ୍ରାମରେ ବାମଣ୍ଡାର ଯୋଗଦାନର ମହନୀୟ ଆଲେଖ୍ୟ ପ୍ରଦାନ କରିଛନ୍ତି। ଲୋକମୁଖରେ ପ୍ରଚଳିତ କାହାଣୀ, ଧର୍ମବିଶ୍ୱାସ, କିମ୍ବଦନ୍ତୀକୁ ଇତିହାସର ସତ୍ୟ ନିର୍ଭର ରୂପ ପ୍ରଦାନ କରିବା ଏକନିଷ୍ଠ ପ୍ରତିଭାର ଅପେକ୍ଷା ରଖେ। ଉତ୍ତୀର୍ଣ୍ଣ ବୟସର ପ୍ରଜ୍ଞାକୁ ସୁବିନିଯୋଗ କରି ଶ୍ରୀଯୁକ୍ତ କର ବହୁ ଅଧ୍ୟୟନ ଓ ଗବେଷଣା ମାଧ୍ୟମରେ ଯେଉଁ ଆୟସସାଧ୍ୟ ଇତିହାସ ପ୍ରସ୍ତୁତ କରିଛନ୍ତି, ତାହା ଆଗାମୀ ବଂଶଧରକୁ ଉଚିତ ପଥ ପ୍ରଦର୍ଶନ କରିବ ଏଥିରେ ଦ୍ୱିମତ ନାହିଁ।

ପୁସ୍ତକ ପ୍ରକାଶନ ପୂର୍ବରୁ ମୋତେ ପାଣ୍ଡୁଲିପି ପଢ଼ିବାର ସୁଯୋଗ ପ୍ରଦାନ କରି ସେ ଯେଉଁ ଶ୍ରଦ୍ଧା ଦେଖାଇଛନ୍ତି ସେଥିପାଇଁ ମୁଁ କୃତଜ୍ଞ। ଶ୍ରୀଯୁକ୍ତ କରଙ୍କ ଏହି ମହନୀୟ କୃତି ଗବେଷକ, ପାଠକ ଓ ଇତିହାସର ପ୍ରେମିକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିବ ବୋଲି ଆଶା କରେ।

୧୫/୯/୨୦୦୬ — ଡ଼କ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

କୁଚିଣ୍ଡା

# ପ୍ରସ୍ତାବନା

"History is the essence of numerous biographies. If one wants to know the meaning of history, let him look-into the lives of great men" - CARLYLE

ମୋର ଜନ୍ମ ପୂର୍ବତନ ଗଡ଼ଜାତ ବାମଣ୍ଡାର ଏକ କ୍ଷୁଦ୍ର ପଲ୍ଲୀରେ; ଯାହାର ପାଣି, ପବନରେ ମୁଁ ବଢ଼ିଛି; ଯାହା କୋଳରେ ଖେଳି ବୁଲି ମୋର ବାଲ୍ୟଜୀବନ ଅତିବାହିତ କରିଛି; ଯାହାର ଦୀପ୍ତିରେ ମୋର ଜୀବନ-ସରଣୀ ଉଦ୍ଭାସିତ ହୋଇଛି; ଯେଉଁ ବାମଣ୍ଡା ଦିନେ 'ବୁଧ-ହଂସ-କେଳିସର' ଓ 'ଉତ୍କଳର ଉଜ୍ଜୟିନୀ' ଆଖ୍ୟା ଧାରଣ କରି ସମଗ୍ର ଉତ୍କଳଖଣ୍ଡ ତଥା ଭାରତବର୍ଷରେ ପଣ୍ଡିତ ପ୍ରବରମାନଙ୍କୁ ଆକର୍ଷଣ କରୁଥିଲା, ସେଇ ଜୀବନର ସାୟଂକାଳରେ ତାର ଗୌରବମୟ ଅତୀତର ସ୍ମୃତିଚାରଣ କରି ମୁ ବିମୁଗ୍ଧ ହୁଏ ଏବଂ ମୋ ମାନସପଟରେ ତାର ଦୃଶ୍ୟରାଜି ଚଳଚିତ୍ର ସଦୃଶ ଦେଖାଦେଇ ମୋତେ ତନ୍ମୟ କରେ।

ବାମଣ୍ଡାର ଅତୀତ ଇତିହାସ ତଥା ତାର ରାଜନୈତିକ ଉତ୍ଥାନ-ପତନ ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ପ୍ରଖ୍ୟାତ ଐତିହାସିକ ଡ଼କ୍ଟର ଯଜ୍ଞ କୁମାର ସାହୁ ତଥା ପଲିଟିକେଲ ଏଜେଣ୍ଟ କବଡ଼େନ ରାମସେ, ଚଣ୍ଡୀଚରଣ ବନ୍ଦୋପାଧ୍ୟାୟ, ଡ଼କ୍ଟର ଲକ୍ଷ୍ମୀଧର ନାୟକ ପ୍ରମୁଖ ଲେଖକଗଣ ବିଭିନ୍ନ ଦିଗରୁ ବିଚାର କରି ଇତିହାସ ପୃଷ୍ଠାରେ ଲିପିବଦ୍ଧ କରିଛନ୍ତି। ସେସବୁ କିୟଦଂଶ ରୋମନ୍ଥନ କରିବା ସହ କେତେକ ଅନାଲୋଚିତ ତଥ୍ୟାବଳୀ ଏ ପୁସ୍ତକରେ ସ୍ଥାନିତ କରିବା ପାଇଁ ପ୍ରୟାସ କରିଛି। ମୋର ଏହି ପ୍ରୟାସକୁ ସାକାର କରିବା ପାଇଁ ଯେଉଁ ଐତିହାସିକ, ସାରସ୍ୱତ-ସାଧକଗଣ ଅକୁଣ୍ଠ ଚିତ୍ତରେ ହସ୍ତ ପ୍ରସାରଣ କରିଛନ୍ତି, ସେମାନେ ସମସ୍ତେ ମୋର ନମସ୍ୟ ଓ ଧନ୍ୟବାଦାର୍ହ। ଏହା ସତ୍ତ୍ୱେ ବି ଇତିହାସ ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ। ବାମଣ୍ଡା ଇତିହାସ ଉପରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି।

ଓଡ଼ିଶାର ଖ୍ୟାତନାମା ଐତିହାସିକ ଡ଼କ୍ଟର ଯଜ୍ଞ କୁମାର ସାହୁଙ୍କ ଅକୁଣ୍ଠ ସହଯୋଗ, ଅମୂଲ୍ୟ ପରାମର୍ଶ ମୋର ଏ ବାମଣ୍ଡା ଇତିହାସ ଲେଖିବା କଳ୍ପନାକୁ ବାସ୍ତବ ରୂପ ଦେବା ପାଇଁ ଅନୁପ୍ରେରିତ କରିଛି, ସେଥିପାଇଁ ମୁଁ ତାଙ୍କଠାରେ ଚିର ଋଣୀ।

ମୋର ବନ୍ଧୁ ଅବସରପ୍ରାପ୍ତ ଅଧ୍ୟକ୍ଷ, ପ୍ରବୀଣ ସାହିତ୍ୟିକ ଡ଼କ୍ଟର ରାମଚନ୍ଦ୍ର ବ୍ରହ୍ମାଙ୍କ ଉତ୍ସାହବାଣୀ ତଥା ସାହାଯ୍ୟ ମୋ ଲେଖନୀକୁ ବଳିଷ୍ଠ କରିବା ସହ ଏ ଉଦ୍ୟମକୁ

ସାଫଲ୍ୟମଣ୍ଡିତ କରିବାର ପଥ ଉନ୍ମୁକ୍ତ କରିଛି। ସେ ଶରୀରର ଅସୁସ୍ଥତା ସତ୍ତ୍ୱେ ପରିଶ୍ରମ କରି ମୁଖବନ୍ଧ ଲେଖି ପୁସ୍ତକକୁ ମହିମାନ୍ୱିତ କରିଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରିବା ବ୍ୟତୀତ ମୋର ଆଉ ଅନ୍ୟ ଭାଷା ନାହିଁ।

ବାମଣ୍ଡାର ନୂତନ ପିଢ଼ିର ସାରସ୍ୱତ ସାଧକ ଡ଼କ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ ତାଙ୍କ ଦ୍ୱାରା ସମ୍ପାଦିତ ବାମଣ୍ଡାର କବି ଓ ଲେଖକଙ୍କ ଗ୍ରନ୍ଥାବଳୀ ତଥା କେତୋଟି ବିରଳ ଛବି ସ୍ୱତଃପ୍ରବୃତ୍ତ ହୋଇ ମୋତେ ଯୋଗାଇ ଦେଇଥିବାରୁ ଏବଂ ଏହି ପୁସ୍ତକର ତଥ୍ୟାବଳୀକୁ ପରିପୁଷ୍ଟ ତଥା ପରିବର୍ଦ୍ଧିତ କରିବାରେ ସହଯୋଗ କରିଥିବାରୁ ତାଙ୍କୁ ଆଶୀର୍ବାଦ କରୁଛି ଏବଂ ବାଗ୍ଦେବୀଙ୍କୁ ପ୍ରାର୍ଥନା କରୁଛି ଯେ ତାଙ୍କ ଲେଖନୀକୁ ସୁଦୃଢ଼ କରନ୍ତୁ, ତାଙ୍କ ଭବିଷ୍ୟତ ଉଜ୍ଜ୍ୱଳମୟ ହେଉ।

ବାମଣ୍ଡାର ଅନ୍ୟତମ ପ୍ରତିଷ୍ଠିତ ଲେଖକ ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର ଏ ଇତିହାସ ଲେଖିବା ପାଇଁ ଦେଇଥିବା ପ୍ରେରଣା ଅବିସ୍ମରଣୀୟ।

ଏ ପୁସ୍ତକର 'ସାରସ୍ୱତ ସାଧନା' ଅନୁଚ୍ଛେଦରେ ବାମଣ୍ଡାର ସମସ୍ତ କବି ଓ ଲେଖକଙ୍କ ନାମ ଓ ସେମାନଙ୍କ ରଚନାବଳୀ ସ୍ଥାନିତ କରିବା ତଥା 'ବାମଣ୍ଡାର ସ୍ୱାଧୀନତା ସଂଗ୍ରାମ' ଅନୁଚ୍ଛେଦରେ ସମସ୍ତ ସଂଗ୍ରାମୀଙ୍କ ନାମ ଦେବା ସମ୍ଭବ ହୋଇ ନ ଥିବାରୁ ସେମାନଙ୍କଠାରେ ମୁଁ କ୍ଷମାଭିକ୍ଷା କରୁଛି।

'ସହାୟକ ଗ୍ରନ୍ଥାବଳୀ'ରେ ସୂଚିତ ପୁସ୍ତକଗୁଡ଼ିକର ଲେଖକ ତଥା ଗବେଷକଗଣ ମୋର ଚିରନମସ୍ୟ। ସେମାନଙ୍କ ରଚନାବଳୀର ସାହାଯ୍ୟ ବିନା ମୋ ପକ୍ଷେ ବାମଣ୍ଡାର ଇତିହାସ ଲେଖିବା ସମ୍ଭବପର ହୋଇ ନ ଥାନ୍ତା।

ପାଣ୍ଡୁଲିପି ପ୍ରସ୍ତୁତିରେ ମୋର ଜ୍ୟେଷ୍ଠା କନ୍ୟା ରତ୍ନପ୍ରଭା, ପୁତୁରା ମହେନ୍ଦ୍ର, ଡ଼ି.ଟି.ପି. କରିବାରେ ମୋର ପୁତ୍ରତୁଲ୍ୟ ଶ୍ରୀ ଦୀନବନ୍ଧୁ ମିଶ୍ର, ପ୍ରଚ୍ଛଦପଟକୁ ଆକର୍ଷଣୀୟ କରିବାରେ ଶ୍ରୀ ଗୌରାଙ୍ଗ ମିତ୍ର ତଥା ଅନ୍ୟ ସମସ୍ତେ ଅକ୍ଲାନ୍ତ ପରିଶ୍ରମ ଓ ସକ୍ରିୟ ସହଯୋଗ କରିଥିବାରୁ ସେମାନେ ମୋର ଅଭିନନ୍ଦନୀୟ ଓ ଶ୍ରଦ୍ଧାସ୍ପଦ।

ପରିଶେଷରେ ପୁସ୍ତକରେ ପ୍ରଦତ୍ତ ତଥ୍ୟ ଗୁଡ଼ିକରେ କୌଣସି ତ୍ରୁଟି, ବିଚ୍ୟୁତି ଲକ୍ଷ୍ୟ କଲେ ତଥ୍ୟାଭିଜ୍ଞ ପାଠକପାଠିକାଗଣ ମୋର ଦୃଷ୍ଟି ଆକର୍ଷଣ କରି ସୁଚିନ୍ତିତ ମତାମତ ପ୍ରଦାନ କଲେ ମୁଁ ସେସବୁ ନମ୍ରତାସହ ଗ୍ରହଣପୂର୍ବକ ପରବର୍ତ୍ତୀ ସଂସ୍କରଣରେ ସେଥିପ୍ରତି ଧ୍ୟାନ ଦେବି।

ବିନୀତ

*ବାଳକୃଷ୍ଣ କର*

# ସୂଚୀପତ୍ର

## ପ୍ରଥମ ଭାଗ

### ବାମଣ୍ଡା ରାଜ୍ୟର ଶାସନ



## ଦ୍ୱିତୀୟ ଭାଗ

### ବାମଣ୍ଡା ରାଜ୍ୟର ସଂସ୍କୃତି





# ବାମଣ୍ଡା ଇତିହାସ
## - ପୂର୍ବାଭାସ -

ଓଡ଼ିଶା ପ୍ରଦେଶର ୨୬ଟି ଗଡ଼ଜାତ ମଧ୍ୟରୁ ବାମଣ୍ଡା ଅନ୍ୟତମ। ପ୍ରାଚୀନ କାଳରୁ ଏହାର ଅବସ୍ଥିତି ଓ ରାଜନୈତିକ ସ୍ଥିତି ନେଇ ଗବେଷକଗଣ ଭିନ୍ନ ଭିନ୍ନ ମତ ପୋଷଣ କରିଥାନ୍ତି। ଏହି ରାଜ୍ୟ ଅଖୋଜ ବାମଣ୍ଡା ନାମରେ ଅଭିହିତ ଥିଲା। ବାମଣ୍ଡା ରାଜ୍ୟର ନାମକରଣ ନେଇ ବିଭିନ୍ନ ଜନଶ୍ରୁତି ରହିଛି। ପୂର୍ବକାଳରେ ଏହି ରାଜ୍ୟକୁ ଏକ ଆଦିବାସୀ ଦମ୍ପତି ରାଜତ୍ୱ କରୁଥିଲେ। ସେମାନଙ୍କ ନାମ ଥିଲା ବାମ ଓ ମଣ୍ଡା। ସେହି ଅନୁସାରେ ରାଜ୍ୟର ନାମ ହେଲା ବାମଣ୍ଡା। ପୁନଶ୍ଚ ଷୋଡଶ ଶତାବ୍ଦୀର ପଞ୍ଚସଖା ବଳରାମ ଦାସଙ୍କ ରଚିତ ଜଗମୋହନ ରାମାୟଣରେ ଉଲ୍ଲେଖ ଅଛି ଯେ ରାମଚନ୍ଦ୍ରଙ୍କ ବାନରସେନା ଯାଉ ଯାଉ ଯେଉଁ ଘନ ଅରଣ୍ୟ ମଧ୍ୟରେ ବାଟବଣା ହେଲେ ସେହି ଅଞ୍ଚଳର ନାମ ହେଲା ବଣାଇଁ, ପୁଣି ବାମ ବାଟରେ ଯାଇ ବାଟ ନ ପାଇ ଯେଉଁ ଅଞ୍ଚଳରେ ପ୍ରବେଶ କଲେ ସେହି ଅଞ୍ଚଳର ନାମ ହେଲା ବାମଣ୍ଡା।

ଘନ ଅରଣ୍ୟାନୀ ପରିବେଷ୍ଟିତ ଏହାର ପ୍ରାଚୀନ ସ୍ଥିତି ଏପରି ଥିଲା ଯେ ଘଞ୍ଚ ଜଙ୍ଗଲ ଓ ପାହାଡର ନିମ୍ନ ଦେଶରେ ଅବସ୍ଥିତ କ୍ଷୁଦ୍ରପଲ୍ଲୀ ମାନଙ୍କ ସନ୍ଧାନ କରିବା ସହଜସାଧ୍ୟ ନଥିଲା। ଏ ଅଞ୍ଚଳରେ ମୁଖ୍ୟତଃ କନ୍ଧ, ଭୂୟାଁ ଓ ଗଣ୍ଡ ଜାତିର ଆଦିମ ଅଧିବାସୀ ଗଣ ବସବାସ କରୁଥିଲେ। ଅନ୍ୟ ସମ୍ପ୍ରଦାୟର ଜନଜାତି ତଥା ଆର୍ଯ୍ୟସମାଜ ପରେ ଆସି ଏମାନଙ୍କ ସହିତ ବସତି କଲେ। ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ଏ ବନଭୂମି ବନପକ୍ଷୀଙ୍କ କାକଳି, ବନ୍ୟପଶୁଙ୍କ ହେଷ୍ଟାଳ ସଙ୍ଗେ ସଙ୍ଗେ ଋତୁରାଜ ବସନ୍ତର ଆଗମନରେ ଆମ୍ର ବକୁଳର ସୁରଭି-ଉନ୍ମାଦିତ ଭ୍ରମରର ମଧୁଗୁଞ୍ଜନରେ ମୁଖରିତ ହେଉଥିଲା। ବନବାସୀଙ୍କ ମୁଖ୍ୟପେଷା ଥିଲା ପୋଡୁଚାଷ ଓ ପଶୁପକ୍ଷୀଙ୍କ ଶିକାର। ସ୍ତ୍ରୀ ଲୋକମାନେ ଜଙ୍ଗଲରୁ ଫଳମୂଳ, ଜାଳେଣୀକାଠ ଆଦି ସଂଗ୍ରହ କରି ଘର ସଂସାର ଚଳାଇ ନେଉଥିଲେ। ପିଲାମାନେ ବୃକ୍ଷର ଶୀତଳଛାୟା ତଥା ଗିରି ନିର୍ଝରର କୂଳେ କୂଳେ ବନପକ୍ଷୀଙ୍କ ସ୍ୱରରେ ସ୍ୱର ମିଳାଇ ମୃଗଶାବକଙ୍କ ସହ ଲୁଚକାଳି ଖେଳି ଖେଳି

ମହା ଆନନ୍ଦରେ ଦିନ ଅତିବାହିତ କରୁଥିଲେ। ପରେ ଅନ୍ୟଜାତିର ଲୋକେ ଏ ଅଞ୍ଚଳକୁ ଆସିଲେ। ଓଁରାମ ଜନଜାତିକୁ ଡ଼େକାନ୍‌ର ବାସିନ୍ଦା ବୋଲି କୁହାଯାଏ। ଏମାନେ ପ୍ରଥମେ ଛୋଟନାଗପୁର ଅଞ୍ଚଳକୁ ଆସି ପରେ ଓଡ଼ିଶା ତଥା ବାମଣ୍ଡା ଅଞ୍ଚଳରେ ବାସ କଲେ। ଏହି ଜନଜାତିର ଅନ୍ୟ ଏକ ଗୋଷ୍ଠୀର ନାମକୁ ଆଧାର କରି କ୍ଷୁଦ୍ର ଜଳାଶୟକୁ 'ମୁଣ୍ଡା' ବୋଲି କୁହାଯାଏ। ଓରାଓଁମାନଙ୍କ ଭାଷାକୁ "କୁରୁଖ" କୁହାଯାଏ। ଯାହା ଦ୍ରାବିଡ଼ମାନଙ୍କ ଭାଷାର ଅନ୍ତର୍ଗତ ବୋଲି ଭାଷାବିତ୍‌ମାନେ କହନ୍ତି। ତେବେ ବିହାର ସୀମା ବାସିନ୍ଦାଙ୍କ ଭାଷା "ସାଦ୍ରି"। ହିନ୍ଦୀ ଭାଷା ଓ ଅନ୍ୟାନ୍ୟ ଆଦିବାସୀ ଭାଷାର ସମ୍ମିଶ୍ରଣ ହେଉଛି ଏ ଭାଷା। ଓରାଓଁ ଆଦିବାସୀଙ୍କଠାରୁ ସ୍ପଷ୍ଟ କିଷାନ୍ ସଂପ୍ରଦାୟ। ଯଦିଓ ଏମାନଙ୍କ ଜାତି ଗୋଟିଏ, ଦେବଦେବୀଙ୍କ ପୂଜା ଅନୁଯାୟୀ ଏମାନେ ଦୁଇଭାଗରେ ବିଭକ୍ତ ହୋଇଥିବାର ଜଣାଯାଏ। କିଷାନ୍ ସଂପ୍ରଦାୟର ଲୋକେ ବାମଣ୍ଡାର କୋଚିଣ୍ଡା ସବ୍‌ଡିଭିଜନ୍‌ରେ ବହୁଳ ପରିମାଣରେ ଦେଖାଯାନ୍ତି। ଏମାନେ ନାଗପୁର ଅଞ୍ଚଳର ମୂଳବାସିନ୍ଦା। କିଷାନ୍ ଜାତିର ମୂଳନାମ କୁଣ୍ହାଁ। ଏହି ଶବ୍ଦରୁ "କିଷାଣ" ଶବ୍ଦର ଉତ୍ପତ୍ତି। ଯେଉଁମାନେ କୃଷ୍ଣଙ୍କ ଭକ୍ତ ହେଲେ, ସେମାନେ "କିଷାନ୍" ଏବଂ ଯେଉଁମାନେ ରାମଙ୍କ ଭକ୍ତ ସେମାନେ ହେଲେ "ଓରାମ"। ଏମାନେ ବିଭିନ୍ନ ଅଞ୍ଚଳରେ ବସବାସ କରି କିଷାନ୍, କୁଡ଼ା, ମିର୍ଦ୍ଧା, ମାଟିଆ ଆଦି ନାମରେ ପରିଚିତ। ଏହି ସଂପ୍ରଦାୟ ନାଗପୁର (ଧାନପୁର)ରୁ ଆସି ପ୍ରଥମେ ସମ୍ବଲପୁର ଜିଲ୍ଲାର ବିହାର-ଓଡ଼ିଶା ସୀମାବର୍ତ୍ତୀ ବାମଣ୍ଡା ଉତ୍ତରସ୍ଥ ମହାବୀର ପର୍ବତରେ ଅବସ୍ଥାନ କଲେ ଏବଂ ପରେ ସେଠାରୁ ଗାଙ୍ଗପୁର ଓ ବାମଣ୍ଡା ଅଞ୍ଚଳକୁ ବିସ୍ତାରିତ ହେଲେ। କ୍ରମଶଃ ଏ ଅଞ୍ଚଳକୁ ଅନ୍ୟଜାତିର ଲୋକେ ଆସିବା ସଙ୍ଗେ ସଙ୍ଗେ ଆର୍ଯ୍ୟଜାତିର ଆଗମନ ହେଲା।

ଆଦିବାସୀ ଜନଜାତିର ଚଳଣି ଅତି ନିରାଡ଼ମ୍ବର ଥିଲା। ପୁରୁଷଲୋକେ ଆଣ୍ଠୁଯାଏ ଧୋତି ଓ ସ୍ତ୍ରୀଲୋକେ ଅଣ୍ଟାରେ ଗୁଡ଼େଇ ଶାଢ଼ୀ ପିନ୍ଧୁଥିଲେ। ସ୍ତ୍ରୀଲୋକଙ୍କ ସିଲ୍‌ଭର୍ ବା ରୂପାର ଅଳଙ୍କାର ଅତି ପ୍ରିୟ ଥିଲା, କିନ୍ତୁ ଏବେ ଅନ୍ୟ ଜାତିକୁ ଅନୁକରଣ କରି ସେମାନଙ୍କ ବେଶ ଭୂଷା ତଥା ଅଳଙ୍କାର ପିନ୍ଧାରେ ପରିବର୍ତ୍ତନ ହେଲାଣି। ଚାଉଳ ଓ ରାନୁ ମିଶ୍ରିତ ହାଣ୍ଡିଆ ବା କୁସୁନା ସେମାନଙ୍କ ଅତି ପ୍ରିୟ ପେୟ ଅଟେ। ସ୍ତ୍ରୀ ଓ ପୁରୁଷ କୁସୁନା ବା ମହୁଲି ମଦ ପିଇ ମାଦଳ ବାଦ୍ୟର ତାଳେ ତାଳେ ନାଚି ଜୀବନକୁ

ଉପଭୋଗ କରନ୍ତି । କୃଷି ଏମାନଙ୍କର ପ୍ରଧାନ ଉପଜୀବ୍ୟ । ସମୟର ଉଜାଣି ଯାତ୍ରା କଲେ ଅତୀତର ବହୁ ଚିତ୍ର ପ୍ରତିବିମ୍ବିତ ହୁଏ । ମୂଳ ବାସିନ୍ଦା ରୂପରେ ବସବାସ କରୁଥିବା ଆଦିବାସୀ ଜନଜାତି ଅଞ୍ଚଳକୁ କ୍ରମାଗତଭାବେ ବିଭିନ୍ନ ଆର୍ଯ୍ୟ ଜାତିର ଅନୁପ୍ରବେଶ ଓ ସହାବସ୍ଥାନ ଆଦିବାସୀ ଜନଜୀବନକୁ ପ୍ରଭାବିତ କରିଛି ଏବଂ ଉପକୂଳ ସଂସ୍କୃତିର ଏକ ସଂମିଶ୍ରଣ ଘଟିଛି ।

ସଂପ୍ରତି ବାମଣ୍ଡାର ଆଦିବାସୀ ଜନଜାତିଙ୍କ ବ୍ୟତୀତ ମୁଖ୍ୟତଃ ଅନ୍ୟ ଦୁଇଟି ଜାତି ବସବାସ କରନ୍ତି । ସେମାନେ ହେଲେ ଆଗରିଆ ଓ ଚଷା । ପୂର୍ବତନ ବାମଣ୍ଡାର ଦୁଇଟି ସବ୍‌ଡିଭିଜନ୍ ଦେବଗଡ଼ ଓ କୁଚିଣ୍ଡାରେ ଯଥାକ୍ରମେ ଚଷା ଓ ଆଗରିଆଙ୍କ ସଂଖ୍ୟା ଓ ପ୍ରାଧାନ୍ୟ ଅତ୍ୟଧିକ । ବାମଣ୍ଡାର ରଜା ରଘୁନାଥ ଦେବଙ୍କ ରାଜତ୍ୱ କାଳରେ ବାମଣ୍ଡା ଓ ଗାଙ୍ଗପୁର ରାଜ୍ୟ ମଧ୍ୟରେ ଯୁଦ୍ଧ ହୋଇଥିଲା । ଯୁଦ୍ଧରେ ଗାଙ୍ଗପୁର ରାଜା ପରାସ୍ତ ହେଲେ । ସେ ଯୁଦ୍ଧରେ କ୍ଷତିପୂରଣ ପାଇଁ ଧାର୍ଯ୍ୟ କଉଡି ଦେଇ ନ ପାରିବାରୁ ଗାଙ୍ଗପୁର ରାଜ୍ୟର କେତେକ ଅଞ୍ଚଳ ବାମଣ୍ଡା ରାଜାଙ୍କୁ ବନ୍ଧକ ଦେଲେ । ବର୍ତ୍ତମାନ ବାମରା (ଗୋବିନ୍ଦପୁର) ବ୍ଲକ ଅଞ୍ଚଳକୁ 'ବନ୍ଧାବାର ପ୍ରଗଣା' ବୋଲି ନାମିତ କରାଯାଇଥିଲା । ଏହି ଅଞ୍ଚଳରେ ଆଗରିଆ ଜାତିର ଲୋକେ ବସବାସ କରୁଥିଲେ ଏବଂ ସେମାନେ କ୍ରମଶଃ ଅନ୍ୟ ଅଞ୍ଚଳକୁ ନିଜ ବଂଶଧରଙ୍କୁ ବିସ୍ତାର କଲେ । ଏମାନେ ମୁଖ୍ୟତଃ କୃଷି ଉପରେ ନିର୍ଭର କରନ୍ତି । ପୁନଶ୍ଚ, ଏ ଜାତିର ଲୋକେ ସାଧାରଣତଃ ଆତ୍ମନିର୍ଭରଶୀଳ । 'କୁଟି ଖାଇବା ଓ କାଟି ପିନ୍ଧିବା' ଏମାନଙ୍କ ଲକ୍ଷ୍ୟ । ଏଣୁ ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ନୀତିକୁ ଏମାନେ ବହୁଦିନରୁ ବଂଶାନୁକ୍ରମେ କାର୍ଯ୍ୟରେ ପରିଣତ କରି ଆସୁଥିଲେ । କଂଗ୍ରେସ କର୍ମୀମାନଙ୍କୁ କଂଗ୍ରେସର ନୀତି ନିୟମକୁ ଏ ଅଞ୍ଚଳରେ ପ୍ରବର୍ତ୍ତନ କରିବାରେ ଆଦୌ ଅସୁବିଧାର ସମ୍ମୁଖୀନ ହେବାକୁ ପଡି ନଥିଲା । ସେମାନେ ତୁଳା ଭିଣି ସୂତା କାଟୁଥିଲେ ଓ ତନ୍ତୀକୁ ନିଜ ହାତକଟା ସୂତାରେ ଧୋତି ଓ ଶାଢ଼ୀ ବୁଣିବାକୁ ଦେଉଥିଲେ । କେହି କେହି ନିଜେ ତନ୍ତରେ ଧୋତି ଓ ଶାଢ଼ୀ ବୁଣୁଥିଲେ । ଅଧିକ ଚାଷ ଜମି ଓ ସୁନାସଂଗ୍ରହ କରିବା ଏ ଜାତିର ଲୋକଙ୍କ ଲକ୍ଷ୍ୟ । ସ୍ତ୍ରୀଲୋକଙ୍କ ଅଳଙ୍କାର ମଧ୍ୟରେ ସେମାନେ ମୁଣ୍ଡରେ ଖୋଷୁଥିଲେ ରୂପାର ପାନପତ୍ର, ନାକରେ ସୁନା ଗୁଣା, ବେକରେ ଖଗଲା, କାନରେ ସୁନା ଗଣ୍ଠିଆ, ବାହୁରେ ତାଡ଼ ଓ

ବାହୁସୂତା, ହାତରେ ବନ୍ଦରିଆ, କତରିଆ, ଅଣ୍ଟାରେ ରୂପାର ଗୁଣଚି ଓ ପାଦରେ ପଇଁରି। ଏ ପ୍ରକାର ଅଳଙ୍କାର ଆଗରିଆ ଜାତିର ସ୍ତ୍ରୀମାନଙ୍କ ଠାରୁ ଅନୁକରଣ କରି ଅନ୍ୟ ଜାତିର ସ୍ତ୍ରୀ ଲୋକେ ମଧ୍ୟ ପିନ୍ଧୁଥିଲେ। ଏହା ବ୍ୟତୀତ ଧନୀ ଲୋକର ସ୍ତ୍ରୀମାନେ ସୁନାର ମାଳି ମଧ୍ୟ ପିନ୍ଧୁଥିଲେ। ଏବେ ସେ ସବୁ ଅଳଙ୍କାର ଦେଖିବାକୁ ସ୍ୱପ୍ନ। ଶାଳମଞ୍ଜିରୁ ତେଲ ବାହାର କରିବାରେ ଏବେ ଶିଳ୍ପୋଦ୍ୟୋଗୀମାନେ ବାହାଦୁରି ନେଉଛନ୍ତି। ଆଗରିଆ ଜାତିର ଲୋକେ ବହୁଦିନରୁ ଶାଳମଞ୍ଜିର ତେଲ ଖାଇବା ସହ ଦେହରେ ଲଗାଉଥିଲେ। ଏ ଜାତିର ସବୁଠାରୁ ଉତ୍କୃଷ୍ଟ ଗୁଣ ହେଲା ଅତିଥି ପରାୟଣତା। ଏବେ ଏମାନେ ଶିକ୍ଷାରେ ଅନ୍ୟମାନଙ୍କୁ ଟପିଗଲେଣି। ଏପରିକି, ସୁଦୂର ଆମେରିକାରେ ମଧ୍ୟ କଲୋନୀ ସ୍ଥାପନ କଲେଣି। କିନ୍ତୁ ପ୍ରାକ୍ ସ୍ୱାଧୀନତା କାଳରେ ସେମାନେ ଶିକ୍ଷାପ୍ରତି ଆଗ୍ରହୀ ନଥିଲେ। ଯେଉଁମାନେ ବି ପଢୁଥିଲେ ସେମାନଙ୍କ ଶିକ୍ଷାର ସମୟ ସୀମିତ ଥିଲା – from mothers' breast to wive's breast ମଧ୍ୟରେ। ଏ ଜାତିର ଅନ୍ୟ ଏକ ବିଶେଷ ଗୁଣ ହେଲା ନିଜ ମାତୃଭାଷା ପ୍ରତି ଆଦର। ଯେତେ ଉଚ୍ଚଶିକ୍ଷିତ ହେଲେ ବି ନିଜ ଜାତିର ଲୋକଙ୍କ ସହ ଲରିଆ (ଲରିଆ ହିନ୍ଦି ମିଶ୍ରିତ ଛତିଶଗଡ଼ି ଭାଷା) ଭାଷାରେ କଥାବାର୍ତ୍ତା କରିବା। ସେମାନେ ପର୍ବପର୍ବାଣିରେ ସୁସ୍ୱାଦୁ 'ଠେଠରୀ' ପିଠା କରି ସାଇ ପଡିଶାରେ ବାଣ୍ଟନ୍ତି। ଆଗେ ସମାଜରେ ବାଲ୍ୟ ବିବାହ ପ୍ରଚଳନ ଥିଲା। ଏପରିକି କଣ୍ଢେଇ ବାହାଘର ପରି ଛଅମାସରୁ ବର୍ଷକ ମଧ୍ୟରେ ପୁଅଝିଅଙ୍କୁ ବିବାହ କରୁଥିଲେ। ଥାଳୀରେ ଧରି ବେଦୀ ଚାରିପାଖେ ବାଦ୍ୟର ତାଳେ ତାଳେ ନାଚିବା ଦୃଶ୍ୟଥିଲା ଅତୀବ ଆକର୍ଷଣୀୟ।

ଏଠାରେ ଆଗରିଆ ଜାତିର ଉତ୍ପତ୍ତି ନେଇ ପୌରାଣିକ ତଥା ଐତିହାସିକ ଭିତ୍ତିଭୂମି ଉପରେ ଆଲୋଚନା କଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଲି ମନେ ହୁଏ। ଏମାନଙ୍କୁ ରାଜା ବିଚିତ୍ରବୀର୍ଯ୍ୟଙ୍କ ରକ୍ଷିତା ଶୂଦ୍ରାସ୍ତ୍ରୀଙ୍କ ଗର୍ଭରୁ ଜାତ ବିଦୂରଙ୍କ ବଂଶଧର ବୋଲି କୁହାଯାଏ। ବିଦୂର କାଶୀ ନିକଟସ୍ଥ ହଟ୍ଟକେଶ୍ୱର ଶୂଦ୍ର ରାଜା କେଶବଦାସଙ୍କ କନ୍ୟାକୁ ବିବାହ କରିଥିଲେ। ତାଙ୍କ ଔରସରୁ ଭୈଭାନୁ ଓ ସୁରମନୁ ନାମକ ଦୁଇଟି ପୁତ୍ରସନ୍ତାନ ଜାତ ହୋଇଥିଲେ। ସେମାନଙ୍କ ବଂଶଧର କ୍ଷତ୍ରିୟ ନାମରେ ଉତ୍ତରଭାରତରେ ପରିଚିତ। ଏହି କ୍ଷତ୍ରିୟଗଣ ଦିଲ୍ଲୀରେ ସୁଲତାନ ଆଦିଶାହାଙ୍କ

ଦ୍ୱାରା ବିଶେଷ ଭାବେ ଅତ୍ୟାଚାରିତ ହେଲେ। ଆଗରିଆ ଜାତି ନିଜର ଆଭିଜାତ୍ୟକୁ ବଜାୟ ରଖିବାକୁ କାହାରି ଆଗେ ଆତ୍ମସମର୍ପଣ କଲେ ନାହିଁ। ନିଜର ସମ୍ମାନ ଓ ଗୌରବ ବଜାୟ ରଖିବାକୁ ଯେ କୌଣସି ପରିସ୍ଥିତିର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ଥିଲେ। ସୁଲତାନ ସେମାନଙ୍କୁ କାନ୍ଦାହାର ଯାଇ ଆଫଗାନଙ୍କ ସହ ଲଢ଼େଇ କରିବାକୁ ଆଦେଶ ଦେଲେ। ଯଦି ଆଦେଶ ଅବମାନନା କରନ୍ତି, ତେବେ ମୃତ୍ୟୁ ଦଣ୍ଡରେ ବା ଦଣ୍ଡିତ ଲୋକ ମୁସଲମାନ ଧର୍ମ ଗ୍ରହଣ କରିବାକୁ ବାଧ୍ୟ ହେବେ। ଏ ଦୁଇଟିରୁ ଯେ କୌଣସିଟିକୁ ଆଦରି ନେବାକୁ ହେବ। ବାରମ୍ବାର ଅତ୍ୟାଚାରିତ ହେବାରୁ ଏହି କ୍ଷତ୍ରିୟମାନଙ୍କ ମଧ୍ୟରୁ ଚଉରାଳିଶଟି ପରିବାର ଓଡ଼ିଶା ଚାଲି ଆସିଲେ। ସେଥିପାଇଁ ସେମାନଙ୍କୁ 'ଚଉରାଳିଶିଆ ସମାଜ' ବୋଲି ବି କୁହାଯାଏ। ସେମାନେ ପାଟନା ରାଜ୍ୟରୁ ଆସି ସମ୍ବଲପୁର ରାଜ୍ୟରେ ବସବାସ କଲେ। ସେତେବେଳେ ଚୌହାନ ବଂଶର ଚତୁର୍ଥ ରାଜା ମଧୁକର ସାଏଙ୍କ ରାଜତ୍ୱ। ପ୍ରଥମ ବସତି ସ୍ଥାପନ କଲେ ସମ୍ବଲପୁର ଜିଲ୍ଲା ଲଇଡାରେ ଏବଂ ସେଠାରୁ ବାମଣ୍ଡା, ଗାଙ୍ଗପୁର ରାଜ୍ୟ ଓ ମଧ୍ୟପ୍ରଦେଶ ଅଞ୍ଚଳକୁ ସେମାନଙ୍କ ବଂଶ ବିସ୍ତାରିତ ହେଲା।

ପୂର୍ବତନ ବାମଣ୍ଡା ରାଜ୍ୟର ଅନ୍ୟ ଏକ ମୁଖ୍ୟଜାତି 'ଚଷା'। ସେମାନେ ଦେବଗଡ଼ ସବ୍‌ଡିଭିଜନ୍ (ବର୍ତ୍ତମାନର ଦେବଗଡ଼ ଜିଲ୍ଲା)ରେ ବସବାସ କରନ୍ତି। ଇତିହାସରୁ ଜଣାଯାଏ ଯେ ପୂର୍ବେ ବାମଣ୍ଡା ରାଜ୍ୟରେ ଏ ଜାତିର ଲୋକେ ନଥିଲେ। ଉଲ୍ଲୁଦାସ ବେହେରା ବାମଣ୍ଡାର ଚଷାମାନଙ୍କ ଆଦିପୁରୁଷ। ଆଠମଲ୍ଲିକରେ ଏହାଙ୍କ ବଂଶଧରର ଷୋହଳଜଣଙ୍କୁ କନ୍ଧମାନେ ହତ୍ୟା କରିବାରୁ ସେ ବାମଣ୍ଡାକୁ ଚାଲି ଆସିଲେ। ଚଷା ସମାଜର ସଭାର ନାମ 'ସ୍ୱକୁଳ ଚନ୍ଦ୍ରିକା'। ଦେବଗଡ଼ ସବ୍‌ଡିଭିଜନ୍ (ବାରକୋଟ ବ୍ଲକ)ର ସଇଡା ଗ୍ରାମରେ ଏ ଜାତିର ମୁଖ୍ୟ ବେହେରା ରହନ୍ତି। ଏମାନଙ୍କ ପରିବାର ରକ୍ଷଣଶୀଳ। ସ୍ୱାଭିମାନୀ ଓ ସ୍ୱାଧୀନଚେତା ଆଗରିଆଙ୍କ ପରି ଏମାନେ ମଧ୍ୟ କୃଷି ଉପରେ ନିର୍ଭରଶୀଳ। ସ୍ତ୍ରୀ ଓ ପୁରୁଷ ଉଭୟେ କଠିନ ପରିଶ୍ରମୀ। ଆଗରିଆ ମାନେ ଶାନ୍ତିପ୍ରିୟ ଓ ସହନଶୀଳ କିନ୍ତୁ ଚଷାମାନେ ଅନ୍ୟାୟକୁ ଆଦୌ ବରଦାସ୍ତ କରନ୍ତି ନାହିଁ। ଏକଜୁଟ ହୋଇ ଅନ୍ୟାୟର ବିରୁଦ୍ଧାଚରଣ କରିବାରେ ଧୁରନ୍ଧର। ରାଜାଙ୍କର ଚଷା ଅଞ୍ଚଳ ପ୍ରତି ସର୍ବଦାଭୟ। ସେମାନଙ୍କୁ କଟୂକ୍ତିରେ 'ମେଳିଆ ଚଷା' ବୋଲି କହି

ବ୍ୟଙ୍ଗ ବିଦ୍ରୂପ କରିବା ଶୁଣା ଯାଉଥିଲା। ଏମାନଙ୍କ ସାମାଜିକ ଜୀବନ ଅତି ସରଳ। ପୁରୁଷ ଲୋକେ ଆଗେ ମୋଟା ଧୋତି ପିନ୍ଧୁଥିଲେ ଏବଂ ସ୍ତ୍ରୀଲୋକେ ଆଣ୍ଠୁଯାଏ ମୋଟା ତନ୍ତବୁଣା ଶାଢ଼ୀ ପିନ୍ଧୁଥିଲେ। ସ୍ତ୍ରୀ ଲୋକେ ଦେହରେ ଛୁଞ୍ଚିରେ ଚିତା କୁଟାନ୍ତି। ଏମାନେ ମଧ୍ୟ ନାକରେ ଦଣ୍ଡି, କାଚର ମାଳି, ହାତରେ ତାଡ଼, ବାହାସୂତା ଓ ଖଡୁ ପିନ୍ଧିଥାନ୍ତି। ଆଧୁନିକତା ପ୍ରଭାବରେ ସେଇ ଧରଣର ଅଳଙ୍କାର ପିନ୍ଧିବା କ୍ରମଶଃ ବନ୍ଦ ହେବାକୁ ବସିଲାଣି।

୧୮୧୭ ମସିହା ବେଳକୁ ବାମଣ୍ଡାର କ୍ଷେତ୍ରଫଳ ଥିଲା ଚାରିଶହ ବର୍ଗ ମାଇଲ ଏବଂ ପାର୍ବତ୍ୟ ଅଞ୍ଚଳରେ ଆଦିମ ଅଧିବାସୀ ଗଣ ରହୁଥିଲେ ୨୪୦୦ ଟି କ୍ଷୁଦ୍ରପଲ୍ଲୀରେ। ଅଧିବାସୀମାନେ ସ୍ୱାଧୀନଚେତା। ସେମାନେ ନିଜ ସଂପ୍ରଦାୟର ଜମିଦାର ବା ମୁଖ୍ୟମାନଙ୍କ ବ୍ୟତୀତ ଅନ୍ୟକାହାରି ଆନୁଗତ୍ୟ ସ୍ୱୀକାର କରନ୍ତି ନାହିଁ। ସଂପ୍ରତି ବାମଣ୍ଡାର (ବର୍ତ୍ତମାନର ଦେବଗଡ଼ ଜିଲ୍ଲା ଓ ସମ୍ବଲପୁର ଜିଲ୍ଲାର କୁଚିଣ୍ଡା ସବ୍‌ଡ଼ିଭିଜନ୍ ମିଶି) କ୍ଷେତ୍ରଫଳ ୧୯୮୮ ବର୍ଗମାଇଲ ବା ପ୍ରାୟ ୫୧୪୯ ବର୍ଗ କିଲୋମିଟର।



# ବାମଣ୍ଡାରେ ରାଜତନ୍ତ୍ରର ପ୍ରତିଷ୍ଠା ଓ ବଂଶାନୁକ୍ରମିକ ଶାସନ

ଐତିହାସିକମାନଙ୍କ ଗବେଷଣା ପ୍ରସୂତ ତଥ୍ୟରୁ ଜଣାଯାଏ ଯେ ଅତୀତରେ କୋଶଳ ରାଜ୍ୟ ଦୁଇଭାଗରେ ବିଭକ୍ତ ହୋଇ ଉତ୍ତର ଓ ଦକ୍ଷିଣ କୋଶଳ ନାମ ଧାରଣ କରିଥିଲା। ଦକ୍ଷିଣ କୋଶଳର ରାଜଧାନୀ ଥିଲା 'ବିନିତାସ୍ୱର', ବର୍ତ୍ତମାନର ସୋନପୁର ଜିଲ୍ଲାର ବିନିକା କାଳକ୍ରମେ ଏ ଅଞ୍ଚଳରେ ସୋମବଂଶୀ ରାଜାମାନେ ଦୁଇଶହ ବର୍ଷ ଧରି ରାଜତ୍ୱ କରିଥିଲେ। ୧୧୧୪ ଖ୍ରୀଷ୍ଟାବ୍ଦ ବେଳକୁ ଏ ଅଞ୍ଚଳ କଳଚୁରୀ ବଂଶଦ୍ୱାରା ଅଧିକୃତ ହୋଇଥିଲା। ମାଦଳା ପାଞ୍ଜିମତେ ତୃତୀୟ ଅନଙ୍ଗଭୀମଦେବ କଳଚୁରୀ ମାନଙ୍କୁ ପରାସ୍ତ କରି ଏହାକୁ ଦଖଲ କଲେ। ମାଦଳାପାଞ୍ଜିରେ ଉଲ୍ଲେଖ ଅଛି, 'ଉତ୍ତରଦିଗେ କାଆଁସା ବାଆଁସା ଠାରୁ ଦନାଇବୁଢ଼ି ନଈ ସରିକି, ଦକ୍ଷିଣେ ଆଏକଲୁ ଋଷି କୋଇଲା ନଦୀଠାରୁ ରାଜମହୀନ୍ଦ୍ର ଦଣ୍ଡପାଟ ସରିକି। ପଶ୍ଚିମେ ଆୟେ କଲୁ ଭୀମନଗର ଦଣ୍ଡପାଟରୁ ବଉଦସୀମା ସୁନୁପୁର ସରିକି'[୧] ଶାସନର ବହୁ ଉତ୍ଥାନ ପତନରେ ଚୌହାଣ ରାଜବଂଶର ପ୍ରତିଷ୍ଠା ହୋଇଥିଲା। ଦ୍ୱାଦଶ ଚୌହାଣ ରାଜା ନରସିଂହ ଦେବ ଭାଇ ବଳରାମ ଦେବଙ୍କ ସହାୟତାରେ ସ୍ୱାଧୀନ ପାଟଣାରାଜ୍ୟ ସ୍ଥାପନ କରିଥିଲେ ଏବଂ ନରସିଂହ ଦେବ ଭାଇ ବଳରାମ ଦେବଙ୍କୁ ପାରିତୋଷିକ ରୂପେ ସମ୍ବଲପୁର ରାଜ୍ୟ ଭାଗ ଦେଇଥିଲେ। ଏ ବିଷୟ କୋଶଳାନନ୍ଦ କାବ୍ୟମ୍‌ରେ ନିମ୍ନମତେ ଉଲ୍ଲିଖିତ ଅଛି –

*ପ୍ରିୟତଂ ଭ୍ରାତରଂ ବୀରଂ ନରସିଂହୋଽପି ସତ୍ୱରଂ*
*ସମାହୂୟ ଦଦୌ ରାଜ୍ୟଂ ସୋମଲେଶାଜ୍ଞୟା ପରମ୍‌।*[୨]

ଏପରି ରାଜନୈତିକ ପରିବର୍ତ୍ତନର ପ୍ରଭାବରେ ବାମଣ୍ଡା ଅଞ୍ଚଳର ଶାସନ କିପରି ପ୍ରଭାବିତ ହୋଇଛି ତାହା ଏଠାରେ ଆଲୋଚନା କରିବାକୁ ପ୍ରୟାସ କରାଯାଇଛି।

---

[୧] ମାଦଳାପାଞ୍ଜି ପୃଷ୍ଠା ୨୩୮ ସଂପାଦକ ମୃତ୍ୟୁଞ୍ଜୟ ନାୟକ

[୨] କୋଶଳାନନ୍ଦ ଅତିରିକ୍ତ ସ୍ୱର୍ଗଃ ୫୨

କୁଦୋପାଲି ଠାରୁ ପ୍ରାପ୍ତ ତାମ୍ରଲିପିରୁ ଜଣାଯାଏ ଯେ, ସୋମବଂଶୀୟ ରାଜତ୍ୱ କାଳରେ ସୋନପୁର ମହାରାଣକଙ୍କ ଅଧୀନରେ ବାମଣ୍ଡାରେ ଶ୍ରୀପୁଞ୍ଜ ନାମକ ଜଣେ ରାଣକ ଥିଲେ। ଉଲ୍ଲିଖିତ ତାମ୍ରଲିପିରେ ପୁନଶ୍ଚ କୁହାଯାଇଛି – "ବାମଣ୍ଡା ପାଟୀ ସମାବାସକାତ୍ ପରମ ମାହେଶ୍ୱର ମାଠର ବଂଶୋଦ୍ଭବ କୁଳତିଳକ କାଳେଶ୍ୱରୀ ବରଲବ୍ଧ ପ୍ରସାଦ ପଞ୍ଚଦଶ ପଲ୍ଲିକାଧିପତିସମାଧିଗତ ପଞ୍ଚମହାଶବ୍ଦମାଣ୍ଡଳିକରାଣକ ଶ୍ରୀପୁଞ୍ଜ ବୋଡସୁତଃ କୁଶଳୀ"।[୩] ସୋନପୁର ମହାମଣ୍ଡଳ ଅଧୀନରେ ବାମଣ୍ଡା ଏକ ମଣ୍ଡଳ ଥିଲା। ଆରାଧଦେବୀ କାଳେଶ୍ୱରୀଙ୍କ ପ୍ରସାଦରୁ ଶ୍ରୀପୁଞ୍ଜ ମଣ୍ଡଳେଶ୍ୱର ପଦବୀରେ ଆସୀନ ହୋଇଥିଲେ। କିୟତ୍‌କାଳ ଅତିକ୍ରାନ୍ତ ହେବାପରେ ଏ ଅଞ୍ଚଳ ରତ୍ନପୁରର କଳଚୁରୀ ମାନଙ୍କ ଅଧିକୃତ ହୋଇଥିଲା। ହୈହୟ ବା କଳଚୁରୀବଂଶର ଶ୍ରୀମନ୍ ଗାଙ୍ଗେୟ ଦେବ ୧୦୧୫ ଠାରୁ ୧୦୪୦ ଖ୍ରୀଷ୍ଟାବ୍ଦଯାଏ ସମ୍ବଲପୁର କୋଶଳ ଅଞ୍ଚଳ ଦଖଲ କରିଥିଲେ। ସେ ଏତେ ପରାକ୍ରମୀ ଥିଲେ ଯେ ଉତ୍କଳର ରାଜା ଚୋଡଗଙ୍ଗଦେବଙ୍କୁ ମଧ୍ୟ ପରାସ୍ତ କରିଥିଲେ। ଏକଥା ପୃଥ୍ୱୀଦେବ ହୈହୟ କଳଚୁରୀ ତାମ୍ରପତ୍ରରେ ଲିପିବଦ୍ଧ ହୋଇଛି।

*"କ୍ଷୀଣୌଜଂ ଉତ୍କଳନୃପଂ ପରିମଥ୍ୟ ଧୀରୋ,*
*ଗାଙ୍ଗେୟଦେବ ବିଭବେ ଶମଦାଚ୍ଛିୟଂ ଯଃ॥"*

କଳଚୁରୀମାନଙ୍କୁ ପରାସ୍ତ କରି ତୃତୀୟ ଅନଙ୍ଗଭୀମଦେବ ଯଦିଓ ସୋନପୁର ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ, ସେ ସମୟରେ ବାମଣ୍ଡା ଗଙ୍ଗବଂଶର ଶାସନାଧୀନ ଥିଲା କି ନା ସନ୍ଦେହ ପ୍ରକାଶ କରନ୍ତି ଡକ୍ଟର ଯଜ୍ଞକୁମାର ସାହୁ।[୪] କିନ୍ତୁ ପାଟଣା ଇତିହାସରେ ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ ଲେଖିଛନ୍ତି ଯେ ଗଙ୍ଗବଂଶୀୟ ରାଜାମାନେ 'ପାଟଣା, କଳାହାଣ୍ଡି, ବସ୍ତର, ବାମଣ୍ଡା, କାଙ୍କେର ଆଦି ରାଜ୍ୟ ମାନଙ୍କରେ ତାଙ୍କର ବଂଶୀୟ ବ୍ୟକ୍ତିମାନଙ୍କୁ ସାମନ୍ତ ରାଜା ରୂପେ ନିଯୁକ୍ତ କରି ଶାସନ କରୁଥିଲେ।[୫] ସୋମବଂଶୀ ଶାସନ କାଳରେ ଓଡ଼ିଶାର ପୂର୍ବାଞ୍ଚଳ ଓ ପଶ୍ଚିମାଞ୍ଚଳ ମଧ୍ୟରେ ଐକ୍ୟ

---

[୩] ସମ୍ବଲପୁର ଇତିହାସ – ଶିବପ୍ରସାଦ ଦାଶ

[୪] ଓଡ଼ିଶା ଇତିହାସ – ଦ୍ୱିତୀୟ ଭାଗ – ଡକ୍ଟର ଯଜ୍ଞକୁମାର ସାହୁ

[୫] ପାଟଣା ଇତିହାସ – ପୃଷ୍ଠା ୮୧ – ଶ୍ରୀ ରାମଚନ୍ଦ୍ର ମଲ୍ଲିକ

[୫କ] ସୋନପୁର ଇତିହାସ – ୨ୟ ଖଣ୍ଡ – ଶ୍ରୀ ସଦାନନ୍ଦ ଅଗ୍ରୱାଲ

ସ୍ଥାପନ ଦିଗରେ ଯେଉଁ ମୂଳଦୁଆ ପଡିଥିଲା, ଗଙ୍ଗ ରାଜତ୍ୱ କାଳରେ ତାହା ଆହୁରି ଦୃଢ଼ୀଭୂତ ହେଲା । ଏହା ସୋନପୁର ଖମ୍ବେଶ୍ୱରୀ ମନ୍ଦିର ଶିଳାଲେଖରୁ ପ୍ରମାଣିତ ।[୫କ] ଏହାପରେ କଳଚୁରୀମାନେ ଦୁର୍ବଳ ହୋଇପଡ଼ିବାରୁ ଦେବଗିରିର ଯାଦବ ରାଜା ସିଂଘନଦେବ କଳଚୁରୀ ମାନଙ୍କୁ ପରାସ୍ତ କରି ଏ ଅଞ୍ଚଳ ଦଖଲ କଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଯାଦବମାନଙ୍କ ପତନ ହେଲା, ଦିଲ୍ଲୀ ସୁଲତାନ ଆଲ୍ଲାଉଦ୍ଦିନ ଖିଲଜୀଙ୍କ ଦେବଗିରି ଆକ୍ରମଣରେ ପରାସ୍ତ ହେବା ଫଳରେ । ଜଣାଯାଏ ଯେ ବାମଣ୍ଡା ଯାଦବମାନଙ୍କ ଶାସନାଧୀନ ଥିଲା । କଳଚୁରୀ ମାନେ ଯାଦବ ରାଜା ସିଂଘନଙ୍କ ଆକ୍ରମଣର ସମ୍ମୁଖୀନ ହୋଇଥିଲେ । ବରଗଡ଼ ସବ୍‌ଡିଭିଜନ୍‌ରୁ ପ୍ରାପ୍ତ ଏକ ରାଷ୍ଟ୍ରକୁଟ ତାମ୍ରଶାସନରୁ ଜଣାଯାଏ ଯେ ଏହି ବଂଶର ମହାମାଣ୍ଡଳିକ ମହାମଣ୍ଡଳେଶ୍ୱର ରାଣକ ଚମର ବିଗ୍ରହଙ୍କ ପୌତ୍ର ରାଣକ ଚରଚକ୍ର ଶଲ୍ୟ କୌଣସି ଏକ ରାଜବଂଶର ଅଧୀନସ୍ଥ ରାଜା ରୂପେ 'ବାଘର କୋଟା' ରାଜଧାନୀରୁ ଶାସନ କରୁଥିଲେ । ଡକ୍ଟର ଶ୍ରୀମତୀ ସ୍ନିଗ୍ଧା ତ୍ରିପାଠୀ ଏହାକୁ ସମ୍ବଲପୁର ଓ ଢ଼େଙ୍କାନାଳ ଜିଲ୍ଲା ସୀମାନ୍ତବର୍ତ୍ତୀ ବ୍ରାହ୍ମଣୀ ନଦୀ କୂଳସ୍ଥ ଅଧୁନାତନ 'ବାରକୋଟ' ସହ ଚିହ୍ନିତ କରିଛନ୍ତି ।[୫ଖ] ତାମ୍ରଶାସନ ସଂପାଦନା ସମୟକୁ ଡକ୍ଟର ସରକାର ୧୧୩୧-୩୨ରେ ପ୍ରଦତ୍ତ ହୋଇଥିବା ମତ ପ୍ରଦାନ କରିଛନ୍ତି ।

ଯାଦବମାନଙ୍କ ପତନ ପରେ ବାମଣ୍ଡା ମଣ୍ଡଳରେ ବିଶୃଙ୍ଖଳା ଓ ଅରାଜକତା ଦେଖାଗଲା । ଆଦିବାସୀ ସଂପ୍ରଦାୟର ଦଳପତି ମାନେ ବାମଣ୍ଡାର ଏକ ସୁଶୃଙ୍ଖଳ ଶାସନ ପ୍ରତିଷ୍ଠା ପାଇଁ ବିଚାର କରି ସେମାନଙ୍କ ମଧ୍ୟରୁ କଟଙ୍ଗପାଣିର ସୁନାକନ୍ଧ ଓ କେଳିପଦର ଗ୍ରାମର କଣ୍ଢାରୁ ଭୂୟାଁଙ୍କୁ ଜଣେ ଶାସନକର୍ତ୍ତା ଖୋଜି ଆଣିବାକୁ ଦାୟିତ୍ୱ ଦେଲେ । ସେ ଦୁହେଁ ପାଟଣା ଯାଇ ଗଙ୍ଗବଂଶ ରାଜାଙ୍କ ସୁଶାସନର ସମ୍ବାଦ ସଂଗ୍ରହ କରି ଉକ୍ତ ବଂଶର ଜଣେ ବ୍ୟକ୍ତିଙ୍କୁ ନେଇ ବାମଣ୍ଡାରେ ରାଜା କରିବାକୁ ସ୍ଥିର କଲେ । ସୁଯୋଗ କ୍ରମେ ସେତେବେଳେ ପାଟଣାର ଶାସକ ହଟ୍ଟମିହିର ଦେବଙ୍କୁ ଚୌହାଣ ବଂଶୀୟ ରମାଇ ଦେବ ଯୁଦ୍ଧରେ ପରାସ୍ତ କରି ନିହତ କରିଥିଲେ । ସେମାନେ ପାଟଣାର ଶେଷ ରାଜା କୃତ୍ତିବାସ ଦେବଙ୍କ ଭାଇଙ୍କୁ ପାଇ ବାମଣ୍ଡା ଆଣିଲେ । ତାଙ୍କୁ ସମ୍ପ୍ରତି କୁଚିଣ୍ଡା ସବ୍‌ଡିଭିଜନ୍‌ସ୍ଥ କାଣ୍ଡସର ନଈ ମୁହାଣରେ ଏକ ଶରଗଛ ମୂଳରେ

[୫ଖ] OHRJ Pol. XXXI No. 2,3,4 P. 158-59

ଅଭିଷେକ କରି 'ସରଯୁଦେବ' ନାମ ଦେଲେ। ସେହିସ୍ଥାନ ବାମଣ୍ଡା ନାମକ ଏକ ଗ୍ରାମ ସୀମାରେ ଥିବାରୁ ରାଜ୍ୟର ନାମ ଦିଆଗଲା 'ବାମଣ୍ଡା'। ସେହିଦିନ ଠାରୁ ବାମଣ୍ଡା ମଣ୍ଡଳ ପରିବର୍ତ୍ତେ ଉକ୍ତ ଅଞ୍ଚଳର ନାମ ହେଲା 'ବାମଣ୍ଡା ରାଜ୍ୟ'। ସରଯୁଦେବ ବଘେଲ ବଂଶୀୟ ରାଜକନ୍ୟାଙ୍କୁ ବିବାହ କରିଥିଲେ। ସେତେବେଳେ ଗମନାଗମନ ପାଇଁ ରାସ୍ତାଘାଟ ନଥିଲା। ଏଣୁ ପ୍ରଜାମାନଙ୍କୁ ରାସ୍ତା ତିଆରି କାମରେ ନିୟୋଜିତ କରି ରାଜ୍ୟରେ ଗମନାଗମନର ସୁବିଧା କଲେ। ରାଜା କନ୍ଧ ଓ ଭୂୟାଁ ମାନଙ୍କୁ ପଠାଇ ପାଟଣାର ନିଜ କୁଳ ପୁରୋହିତ ଦେବାନନ୍ଦ ମହାପାତ୍ରଙ୍କୁ ଅଣାଇ ସମ୍ପ୍ରତି କୁଚିଣ୍ଡା ସବ୍‌ଡିଭିଜନ୍‌ର 'କିରା' ଗ୍ରାମକୁ ତାଙ୍କୁ ଦାନ କଲେ। ଦେବାନନ୍ଦ ମହାପାତ୍ରଙ୍କ ବଂଶାନୁକ୍ରମେ ରାଜାଙ୍କ ରାଜ ପୁରୋହିତ ହୋଇ ରହିଲେ ଓ ସମସ୍ତ ଶୁଭାଶୁଭ କର୍ମ ସଂପାଦନ କଲେ।

ବାମଣ୍ଡାରେ ରାଜତ୍ୱ କରିଥିବା ଗଙ୍ଗବଂଶର ଚିହ୍ନ ଶଙ୍ଖ। ଏହି ଚିହ୍ନ ଗଙ୍ଗବଂଶର ଚୋଡଗଙ୍ଗ ଦେବଙ୍କ ସମୟରୁ ରହିଆସିଛି। ଯେହେତୁ ଚୋଡଗଙ୍ଗ ଦେବ ବୈଷ୍ଣବଧର୍ମାବଲମ୍ବୀ ଥିଲେ, ତେଣୁ ବିଷ୍ଣୁଙ୍କ ଆୟୁଧ ଶଂଖକୁ ରାଜବଂଶର ପ୍ରତୀକ ରୂପେ ଗ୍ରହଣ କରିଥିଲେ। ବଂଶ ପରଂପରାକ୍ରମେ ଏହି ଚିହ୍ନକୁ ରାଜାମାନେ ବ୍ୟବହାର କରି ଆସୁଥିଲେ। ପୁନଶ୍ଚ, ଚୋଡ଼ଗଙ୍ଗ ଦେବଙ୍କ ୧୦୪୧ ମକର ପ୍ରଦତ୍ତ ତାମ୍ରଶାସନରୁ ଜଣାଯାଏ ଯେ ଯଯାତିଙ୍କ ପୁତ୍ର ତୁର୍ବସୁ ଗଙ୍ଗାଦେବୀଙ୍କୁ ଆରାଧନା କରି ପୁତ୍ର ଲାଭ ହେତୁ ପୁତ୍ରର ନାମକରଣ କରିଥିଲେ 'ଗାଙ୍ଗେୟ'। ସେଥିଯୋଗୁଁ ସେହି ବଂଶର ରାଜାମାନଙ୍କୁ 'ଗାଙ୍ଗେୟ' ବୋଲି ଅଭିହିତ କରାଯାଏ। ଅପରପକ୍ଷରେ, ବାମଣ୍ଡାରେ ସ୍ଥାନୀୟ ଆଦିବାସୀ ମାନେ ରାଜବଂଶର ପ୍ରତିଷ୍ଠାତା ହୋଇଥିବାରୁ ପ୍ରତ୍ୟେକ ବର୍ଷ ପୌଷ ପୂର୍ଣ୍ଣିମା ଦିନ ରାଜାଙ୍କ ଅଭିଷେକ ସମୟରେ ରାଜା ସେମାନଙ୍କ ମୁଖ୍ୟମାନଙ୍କ ସହ ଭୂମିଆସନ ଗ୍ରହଣ କରୁଥିଲେ।

## ରୁଦ୍ରନାରାୟଣ ଦେବ

ରୁଦ୍ରନାରାୟଣ ଦେବ ହେଉଛନ୍ତି ବାମଣ୍ଡାର ଷଷ୍ଠ ରାଜା। ସେତେବେଳେ ବାମଣ୍ଡାର ଉତ୍ତର ସୀମାନ୍ତବର୍ତ୍ତୀ ଜୟପୁର ରାଜ୍ୟ ହୈହୟ କଳଚୁରୀ ରାଜା ବିଶ୍ୱନାଥ ଦେବଙ୍କ ଦ୍ୱାରା ଶାସିତ ହେଉଥିଲା। ଶଂସିତ ଜୟପୁର ରାଜ୍ୟର ସୀମା ଥିଲା ଉତ୍ତରରେ

ବର୍ତ୍ତମାନର ବାମରା, ଗଡପୋଷ, ଦକ୍ଷିଣରେ ଭୋଜପୁର, ପୂର୍ବରେ ମଙ୍କୁରଡିମା ଓ ପଶ୍ଚିମରେ ବଡ଼ମାଳ। ରାଜା ବଶ୍ୱନାଥ ନିଶାସକ୍ତ ଓ ନିଃସନ୍ତାନ ଥିବାରୁ ଏହାର ସୁଯୋଗ ନେଇ ରାଜା ରୁଦ୍ରନାରାୟଣ ଦେବ ଜୟପୁର ଆକ୍ରମଣ କରିଥିଲେ।[୬] ତାଙ୍କୁ ଯୁଦ୍ଧରେ ସହାୟତା କରିଥିଲେ ସୁରୁଗୁଜା ଅଧୀନସ୍ଥ ଗାଙ୍ଗପୁରର ସାମନ୍ତ ରାଜା, କତରକେଲାର ଆଦିବାସୀ ଚେମ୍‌ଟା ଓ ରାଜ୍ୟର ବାସିନ୍ଦା କୁମୁରାସର୍ଦ୍ଦାର। ଯୁଦ୍ଧରେ ବିଶ୍ୱନାଥ ଦେବ ପରାସ୍ତ ଓ ନିହତ ହେଲେ। ଜୟପୁର ରାଜ୍ୟ ବାମଣ୍ଡା ଓ ଗାଙ୍ଗପୁର ମଧ୍ୟରେ ବଣ୍ଟା ହେଲା। ରଜା ଚେମ୍‌ଟା ନାମଧାରୀ ଆଦିବାସୀଙ୍କୁ ପାରିତୋଷିକ ସଦୃଶ ଦେହୁରୀ ଉପାଧିରେ ଭୂଷିତ କରି କତରକେଲା ଜମିଦାରୀ ପ୍ରଦାନ କଲେ। ବାମଣ୍ଡାରେ ଉତ୍କଳୀୟ ବ୍ରାହ୍ମଣର ଅଭାବଥିବାରୁ ଏହି ରାଜା ତ୍ରିଲୋଚନ ଚୋବେ ନାମକ ଜଣେ ବ୍ରାହ୍ମଣଙ୍କୁ କନୌଜରୁ ଆଣି କେନ୍ଦୁବରଣୀ ଓ ଖଣ୍ଡିବନ୍ଧ ନାମକ ଦୁଇଟି ଗ୍ରାମ ଦାନସୂତ୍ରରେ ଦେଇଥିଲେ। ତ୍ରିଲୋଚନ ଚୌବେ ରାଜବଂଶର ଗୁରୁ ଓ ପୁରୋହିତ କାର୍ଯ୍ୟ ନିର୍ବାହ କଲେ।

ଷୋଡଶ ଶତାବ୍ଦୀର ପ୍ରାରମ୍ଭରେ ଚୌହନ ବଂଶୀୟ ରାଜା ନରସିଂହ ଦେବଙ୍କ ଭାଇ ବଳରାମ ଦେବ ସମ୍ବଲପୁରରେ ରାଜତ୍ୱ କଲେ। ସେ ବଳପୂର୍ବକ ଲଇଡା, ଝାରସୁଗୁଡ଼ା ଓ କୁଚିଣ୍ଡା ଆଦି ଅଞ୍ଚଳ ନିଜ ରାଜ୍ୟରେ ମିଶାଇଥିଲେ।[୬କ]

ରାଜା ରମାଇ ଦେବଙ୍କ ନାତି ବୈଜଲ ଦେବ ବାମଣ୍ଡା ଆକ୍ରମଣ କରି ଯୁଦ୍ଧରେ ରାଜାଙ୍କୁ ପରାସ୍ତ କଲେ। ବାମଣ୍ଡା ରାଜା ପ୍ରତିବର୍ଷ ବୈଜଲ ଦେବଙ୍କୁ କରସଦୃଶ ଷୋହଳଟି ହାତୀ ଓ ସେନାମତି, ମନ୍ତ୍ରୀଙ୍କୁ ତିନୋଟି ହାତୀ ଦେବାକୁ ରାଜି ହେବାରୁ ସାମନ୍ତ ରାଜା ହୋଇ ରହିଲେ। କୋଶଳାନନ୍ଦ କାବ୍ୟରେ ଦର୍ଶାଯାଇଛି ଯେ -

*"ବାମଣ୍ଡା ଖଣ୍ଡିତାଦଣ୍ଡଂ ଗଜାଂଷୋଡଶ ବାର୍ଷିକଂ,*
*ଯସ୍ମୈଦଦାବନୁଶରତ୍ରୀ ସେନାପତି ମନ୍ତ୍ରୀଣଃ ॥୧୫॥"*[୭]

---

[୬] ଅଗ୍ନିତୀର୍ଥ - ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ

[୬କ] ଅଗ୍ନିତୀର୍ଥ - ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ

[୭] କୋଶଳାନନ୍ଦ କାବ୍ୟଂ - ପୃଷ୍ଠା ୨୫

ସମୟକ୍ରମେ ବାରକୋଟରେ ରାଜତ୍ୱ କରୁଥିବା 'ଜିତ୍' ବଂଶର ରାଜା ନିହତ ହେବାରୁ ବାମଣ୍ଡା ରାଜ୍ୟର ସୀମା ପୂର୍ବକୁ ଠିଆନାଳ ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା ।

## ରଘୁନାଥ ଦେବ

ଅଷ୍ଟମ ରାଜା ରଘୁନାଥ ଦେବଙ୍କ ସମୟରେ ବଳରାମ ଦେବ ବାମଣ୍ଡା ଆକ୍ରମଣ କରିଥିଲେ । ଏହାପରେ ବାମଣ୍ଡା ଏକ କରଦ ରାଜ୍ୟ ହେଲା । ରାଜା ରଘୁନାଥ ଜୟପୁର ଯୁଦ୍ଧରେ ଗାଙ୍ଗପୁର ରାଜା ଭାଗ ପାଇଥିବା ଅଞ୍ଚଳକୁ ବାମଣ୍ଡା ରାଜ୍ୟରେ ମିଶାଇଥିଲେ । କୁହାଯାଏ ଯେ, ଗାଙ୍ଗପୁର ରାଜା ତାଙ୍କ ଅଧିକୃତ ଅଞ୍ଚଳକୁ ବାମଣ୍ଡା ରାଜାଙ୍କ ଠାରେ ବନ୍ଧା ଦେଇ କରଜ ନେଇଥିଲେ । କରଜ ପରିଶୋଧ କରି ନ ପାରିବାରୁ ବାମଣ୍ଡା ରାଜା ସେ ଅଞ୍ଚଳକୁ ନିଜ ରାଜ୍ୟର ଅନ୍ତର୍ଭୁକ୍ତ କଲେ । ଏବେ ସୁଦ୍ଧା ସେ ଅଞ୍ଚଳ 'ବନ୍ଧାବାର ପ୍ରଗଣା' ନାମରେ ପରିଚିତ । ଏହା ମଧ୍ୟ ସରକାରୀ ରେଭେନ୍ୟୁ ରେକର୍ଡରେ ଉଲ୍ଲେଖ କରାଯାଇଛି । ଏ ରାଜାଙ୍କ ସମୟରେ ମରହଟ୍ଟା ମାନେ ବାମଣ୍ଡା ଆକ୍ରମଣ କରିଥିଲେ । ରାଜା ମରହଟ୍ଟା ମାନଙ୍କୁ ପାରିତୋଷିକ ଦେଇ ନିଜ ରାଜ୍ୟରୁ ବିଦାୟ ଦେଇଥିଲେ । ରଜା ରାଜଦରବାରରେ ବସିଥିବା ସମୟରେ ଘଟୁଆଳ ନାମକ ଜଣେ କନ୍ଧ ରାଜାଙ୍କୁ ଲକ୍ଷ୍ୟ କରି ଶର ମାରିଥିଲା । ଶରଟି ରାଜାଙ୍କ ଦେହରେ ନ ବାଜି ଦରବାରର ଖୁଣ୍ଟରେ ବାଜିବାରୁ ଅଳ୍ପକେ ରକ୍ଷା ପାଇ ଯାଇଥିଲେ । ଏହାପରେ ପରେ ବାମଣ୍ଡାର ରାଜଧାନୀ ବାମଣ୍ଡା ଗଡରୁ ସୁଗୁଡା ନାମକ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇଥିଲା । ଏହି ରାଜାଙ୍କ ସମୟରୁ ବାମଣ୍ଡା ରାଜାମାନେ ଯଥାକ୍ରମେ ସୁତ୍ରଳ ଓ ତ୍ରିଭୁବନ ଦେବ ଆଖ୍ୟା ଧାରଣ କରି ରାଜସିଂହାସନରେ ଅଧିରୂଢ଼ ହୋଇ ଆସୁଥିଲେ ।

## ରାମଚନ୍ଦ୍ର ଦେବ

ଦଶମ ରାଜା ରାମଚନ୍ଦ୍ର ଦେବଙ୍କ ସମୟରେ ବାମଣ୍ଡା ରାଜ୍ୟର ରାଜଧାନୀ ସୁଗୁଡାରୁ ଦେଗାଁକୁ ଉଠା ଯାଇଥିଲା । କାଳକ୍ରମେ ଦେଗାଁର ନାମ ଦେବଗଡ଼ ହେଲା । ଏହି ସ୍ଥାନଟି ପାହାଡ ପର୍ବତ ଘେରା ଯୋଗୁଁ ଶତ୍ରୁ ଆକ୍ରମଣରୁ ସୁରକ୍ଷା ବିଚାର କରି ରାଜା ରାଜଧାନୀର ସ୍ଥାନ ପରିବର୍ତ୍ତନ କରିଥିଲେ । ଏହି ରାଜାଙ୍କ ସମୟରୁ ବାମଣ୍ଡା ରାଜପ୍ରସାଦରେ ଦେବୀ 'କନକଦୁର୍ଗା' ପୂଜିତ ହୋଇ ଆସୁଛନ୍ତି । ରାଜା ସ୍ୱପ୍ନରେ ଆଦେଶ ପାଇ ଦେବୀଙ୍କ ମୂର୍ତ୍ତୀକୁ ଆଣିଥିଲେ କୁଚିଣ୍ଡାର ଉତ୍ତର ପାର୍ଶ୍ୱରେ ଅବସ୍ଥିତ

ଭେଡେନ୍ ନଦୀରୁ ବୋଲି କୁହାଯାଏ। ରାଜା ରାମଚନ୍ଦ୍ର ଦେବ ସମ୍ବଲପୁର ରାଜା ହୃଦୟ ନାରାୟଣ ଦେବଙ୍କ ସାମନ୍ତ ରାଜା ଥିଲେ।

## ଦୁଲ୍‌ହା ଦେବ

ଦୁଲ୍‌ହା ଦେବ ହେଉଛନ୍ତି ବାମଣ୍ଡାର ଏକାଦଶ ରାଜା। ଏହି ରାଜା ସମ୍ବଲପୁର ରାଜା ବଳୀୟାର ଦେବଙ୍କ (୧୬୧୭ - ୫୭)ର ସମସାମୟିକ। ଦୁଲ୍‌ହା ଦେବଙ୍କ ରାଜତ୍ୱ ସମୟରେ ବଣାଇର ରାଜା ନରହରିଚନ୍ଦ୍ର ଦେବଙ୍କୁ ହତ୍ୟା କରି ତାଙ୍କ ଭାଇ ଗୋପୀନାଥ ଦେବ ରାଜ ସିଂହାସନ ଅଧିକାର କରିଥିଲେ। ଫଳରେ ବିଧବା ରାଣୀ ସୁମିତ୍ରା ଦେବୀ ନିଜ ଶିଶୁକନ୍ୟାକୁ ନେଇ ନିଜ ପିତୃଗୃହ ରେଢ଼ାଖୋଲକୁ ଚାଲି ଯାଇଥିଲେ। ରାଣୀ ଏ ଘଟଣା ଜଣାଇଲେ ଉଭୟ ସମ୍ବଲପୁର ଓ ବାମଣ୍ଡା ରାଜାଙ୍କୁ। ଏ ଘଟଣା ଉପରେ ଐତିହାସିକ ମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ। ଡକ୍ଟର ଯଜ୍ଞକୁମାର ସାହୁ କହନ୍ତି, "ଏହାଫଳରେ ବଳୀୟାର ଦେବ ଓ ଦୁଲ୍‌ହା ଦେବ ମିଳିତ ଭାବରେ ବଣାଇ ଆକ୍ରମଣ କଲେ। କଦମ୍ବ ରାଜା ଗୋପୀନାଥ ଇନ୍ଦ୍ରଦେବ ପରାସ୍ତ ହୋଇ ଆତ୍ମସମର୍ପଣ ପୂର୍ବକ ନିଜ ଦୁଇ କନ୍ୟାଙ୍କୁ ଯଥାକ୍ରମେ ବଳୀୟାର ଦେବ ଓ ଦୁଲ୍‌ହା ଦେବଙ୍କୁ ପ୍ରଦାନ କଲେ।"[୮] ବଣାଇ ବିଜୟ ଦ୍ୱାରା ବଳିୟାର ଦେବଙ୍କ ଅଠର ଗଡ଼ଜାତ ଗଠନ କାର୍ଯ୍ୟ ଶେଷ ହେଲା। ଐତିହାସିକ ଶିବପ୍ରସାଦ ଦାଶ ଦୃଷ୍ଟାନ୍ତ ଦେଇ ଲେଖିଛନ୍ତି ଯେ ବଣାଇ ଓ ବାମଣ୍ଡା ଭିତରେ ବନ୍ଧୁତା ଥିଲା। ଅନ୍ୟ ଏକ ଘଟଣାରେ, ଯେତେବେଳେ ବଳୀୟାର ସିଂ ବଣାଇ ଆକ୍ରମଣ କଲେ ତାଙ୍କୁ ହରାଇବା ଓ ସ୍ୱାଧୀନତା ହାସଲ ଲକ୍ଷ୍ୟରେ ବାମଣ୍ଡା ରାଜା ବଣାଇ ରାଜାଙ୍କୁ ସାହାଯ୍ୟ କରିଥିବାର ଅନୁମାନ କରାଯାଏ। ଯୁଦ୍ଧରେ ବଣାଇ ରାଜା ପରାସ୍ତ ହୋଇ ସମ୍ବଲପୁରର ସାମନ୍ତ ରାଜା ହୋଇ ରହିବା ପାଇଁ ସ୍ୱୀକାର କଲେ। ଯୁଦ୍ଧ ପରେ ବଣାଇ ଅଧୀନସ୍ଥ ପାଲଲହଡ଼ା ରାଜ୍ୟ ସମ୍ବଲପୁରର ଅଧୀନସ୍ଥ ହେଲା। ବାମଣ୍ଡା ରାଜା ବନ୍ଦୀ ହୋଇ ସମ୍ବଲପୁର ଦୁର୍ଗରେ ରହିଲେ। ରାଜା ଧନରତ୍ନ ଦେଇ ରାଜ ଉଆସର ଚାକରାଣୀ ମାଣିକ୍ୟକୁ ହାତ କଲେ। ମାଣିକ୍ୟ ବଳୀୟାର ସିଂହଙ୍କ କନ୍ୟାକୁ ମଧ୍ୟସ୍ଥ କରି ବାମଣ୍ଡା ରାଜାଙ୍କୁ ବନ୍ଦୀତ୍ୱରୁ ମୁକ୍ତ କଲେ। ମୁକ୍ତି ପାଇବା ପରେ ବାମଣ୍ଡା ରାଜା ବହୁ ଧନରତ୍ନ ଦେଇଥିଲେ।

---

[୮] ଓଡ଼ିଶା ଇତିହାସ - ଦ୍ୱିତୀୟ ଭାଗ - ପୃଷ୍ଠା ୧୯୯-୨୦୦- ଡକ୍ଟର ଯଜ୍ଞକୁମାର ସାହୁ।

ଜେମା ପାଇଥିବା ଅର୍ଥରେ ସମ୍ବଲପୁର ସହରରେ ଦାନୀମଠ, ପାଟଣେଶ୍ୱରୀ ମନ୍ଦିର, ଦୁର୍ଗମଧ୍ୟରେ ଜେମାଦେଇ ମହଲ ନିର୍ମିତ ହୋଇଥିଲା ଏବଂ ମାଣିକ୍ୟ ନିଜେ ପାଇଥିବା ଧନରେ ମୁଦିପଡ଼ାରେ ନିଜ ନାମରେ 'ମାଣିକ୍ୟମୁଣ୍ଡା' ପୋଖରୀ ଓ ନିଜ ପତି ନନ୍ଦଲାଲ ଗୋସାଇଁଙ୍କ ନାମରେ 'ନନ୍ଦଲାଲ ତଲାବ' ଖୋଳାଇଲେ। ଉଭୟ ପୁଷ୍କରିଣୀ ଏବେ ବି ରହିଛି।[୯] ବଳିୟାର ସିଂହ (୧୬୫୦-୧୬୮୮)ଙ୍କ ମୁଖ୍ୟ ରାଜଧାନୀ ଥିଲା ସମ୍ବଲପୁର। ଏହାଙ୍କ ଉପାଧି ଥିଲା 'ଅଠରଗଡ଼ ମଉଡମଣୀ'। ଏହି ଅଠରଗଡ ମଧ୍ୟରେ ବାମଣ୍ଡା ଅନ୍ତର୍ଭୁକ୍ତ ଥିଲା। ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଏହାଙ୍କ ସମୟରେ କୋଶଳ ସାମ୍ରାଜ୍ୟର ସମସ୍ତ ଅଞ୍ଚଳ ଚୌହାନ ବଂଶର ଶାସନାଧୀନ ଥିଲା। ଏତିକି ବେଳକୁ ରେଢ଼ାଖୋଲ ବାମଣ୍ଡାର ଏକ କରଦ ରାଜ୍ୟ ଥିଲା। ଯେହେତୁ ବାମଣ୍ଡାର ଗଙ୍ଗବଂଶର ପ୍ରତୀକ ଶଙ୍ଖ ଏବଂ ରେଢ଼ାଖୋଲ ରାଜାଙ୍କ ପ୍ରତୀକ ଶଙ୍ଖ ଓ ପଦ୍ମ। ଏଣୁ ଉଭୟ ରାଜ୍ୟ ମଧ୍ୟରେ ରାଜନୈତିକ ସଂପର୍କ ଥିଲା ବୋଲି ଜଣାଯାଏ। ଉପରୋକ୍ତ ଯୁଦ୍ଧରେ ବାମଣ୍ଡାର ରାଜା ରେଢ଼ାଖୋଲର ରାଜକନ୍ୟା ତଥା ବଣାଇର ବିଧବାରାଣୀ ସୁମିତ୍ରାଙ୍କୁ କୌଣସି ସାହାଯ୍ୟ ନ କରିବାରୁ ଉଭୟ ରାଜ୍ୟ ମଧ୍ୟରେ ସଂପର୍କ ଛିନ୍ନ ହୋଇଥିବା ଜଣାଯାଏ।

### ମୁଖୀ ଦେବ

ଦ୍ୱାଦଶ ରାଜା ମୁଖୀ ଦେବ ରେଢ଼ାଖୋଲ ରାଜା ଭଗବାନ ଜେନାମଣିଙ୍କ ବିଚ୍ଛିନ୍ନତା ମନୋଭାବ ଦେଖି ରେଢ଼ାଖୋଲ ଆକ୍ରମଣ କରି ରାଜାଙ୍କୁ ବନ୍ଦୀ କଲେ। ରେଢ଼ାଖୋଲ ରାଜା ବର୍ଷକୁ ଦୁଇଥର ବାମଣ୍ଡା ଆସି ରାଜାଙ୍କୁ ସମ୍ମାନ ଜଣାଇବାକୁ ପ୍ରତିଶ୍ରୁତି ଦେବାରୁ ତାଙ୍କୁ ବନ୍ଦୀରୁ ମୁକ୍ତ କରାଗଲା। ଏତଦ୍‌ଭିନ୍ନ ମୁଖୀ ଦେବ ପାଲଲହଡା ଆକ୍ରମଣ ପୂର୍ବକ ରାଜା ରଘୁନାଥ ପାଲଙ୍କୁ ପରାସ୍ତ କରି ତାଙ୍କ କନ୍ୟାକୁ ବିବାହ କରିଥିଲେ। ପାଲଲହଡା ରାଜା ବାମଣ୍ଡାର ଅନୁଗତ ହୋଇ ରହିବାପାଇଁ ସର୍ତ୍ତ ଲେଖିଦେବାରୁ ତାଙ୍କୁ ବନ୍ଦୀତ୍ୱରୁ ମୁକ୍ତ କରାଗଲା। ମାଦଳାପାଞ୍ଜିରେ ମଧ୍ୟ ଏହି ସର୍ତ୍ତ ବିଷୟରେ ଲିପିବଦ୍ଧ ହୋଇଛି।

---

[୯] ସମ୍ବଲପୁର ଇତିହାସ - ପୃଷ୍ଠା - ୩୫୨-୩୫୩ - ଶ୍ରୀ ଶିବ ପ୍ରସାଦ ଦାଶ ଓ ସଂକ୍ଷିପ୍ତ କୋଶଳ ବା ସମ୍ବଲପୁର ଇତିହାସ - ପୃଷ୍ଠା ୧୬୪-୧୬୫।

## ସଦାନନ୍ଦ ଦେବ

ଚତୁର୍ଦ୍ଦଶ ରଜା ସଦାନନ୍ଦ ଦେବ ତାଙ୍କ ରାଜତ୍ୱ କାଳରେ ହରିଶର୍ମା ଦ୍ୱିବେଦୀ ଓ ହରିହର ଦାଶ ନାମକ ଦୁଇଜଣ ବ୍ରାହ୍ମଣଙ୍କୁ ଆଣି ଜଡାଗୋଳା ବ୍ରାହ୍ମଣ ଶାସନ ପ୍ରଦାନ କରିଥିଲେ।

## ହାଡୁ ଦେବ

ଊନବିଂଶ ରାଜା ହାଡୁ ଦେବ ପ୍ରଜାପୀଡକ ଓ ଅତ୍ୟାଚାରୀ ଥିବାରୁ ତାଙ୍କ ବିରୁଦ୍ଧରେ ଆଦିବାସୀ ମାନେ ବିଦ୍ରୋହ କରିଥିଲେ। ହାଡୁଦେବ ଅପୁତ୍ରିକ ଥିବାରୁ ଜମିଦାର ଲୁଠା ଠାକୁର ଓ ବରଜୁ ଦେହୁରୀ ରାଜାଙ୍କ ଭାତୁଷ୍ପୁତ୍ର ଚନ୍ଦ୍ରଶେଖର ଦେବଙ୍କୁ କୁଲେଇଗଡକୁ ନେଇ ବାମଣ୍ଡାର ରାଜା ବୋଲି ଅଭିଷେକ କଲେ। ହାଡୁଦେବ ଭୟରେ ପଳାଇଯାଇ ବଣାଇରେ ଆଶ୍ରୟ ନେଲେ।

## ଚନ୍ଦ୍ରଶେଖର ଦେବ

ଏ ହେଉଛନ୍ତି ବାମଣ୍ଡାର ବିଂଶତମ ରାଜା। ହାଡୁ ଦେବଙ୍କ ପଳାୟନ ପରେ ଚନ୍ଦ୍ରଶେଖର ଦେବ ରାଜଧାନୀକୁ ଫେରି ଆସିଲେ। ବଲଣ୍ଡାରେ ସେ ଏକ ନୂଆ ଜମିଦାରୀ ସୃଷ୍ଟିକରି ଝାଣ୍ଟୁମାଝୀ ନାମକ ଜଣେ ଗଣ୍ଡଙ୍କୁ 'ମହାପାତ୍ର' ଉପାଧି ଦେଇ ବଲଣ୍ଡାର ଜମିଦାର କଲେ। ଏବେ ବି ସେହି ଜମିଦାରୀ ସ୍ଥାନକୁ 'ମହାପାତ୍ର ବଲଣ୍ଡା' ବୋଲି କୁହାଯାଉଛି।

## ପ୍ରତାପରୁଦ୍ର ଦେବ

ଏକବିଂଶ ରାଜା ପ୍ରତାପରୁଦ୍ର ଦେବ ପୁରୁଣାଗଡ଼ରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ।

## ସର୍ବେଶ୍ୱର ଦେବ

ଦ୍ୱାବିଂଶ ରାଜା ସର୍ବେଶ୍ୱର ଦେବ ପୂର୍ବ ଶତ୍ରୁତାକୁ କେନ୍ଦ୍ର କରି ରେଢ଼ାଖୋଲ ରାଜାଙ୍କ ଏକ ଗୁପ୍ତଚର ଦ୍ୱାରା ନିହତ ହୋଇଥିଲେ। ସ୍ୱାମୀଙ୍କ ଅକାଳ ମୃତ୍ୟୁରେ ରାଜାଙ୍କ ପାଟମହାଦେଈ ରାଣୀ ଚନ୍ଦ୍ରକୁମାରୀ ରାଜାଙ୍କ ଚିତାନଳରେ ଝାସ ଦେଇଥିଲେ। କୋରଡକୋଟ ଠାରେ ଅବସ୍ଥିତ ଉକ୍ତ ସ୍ଥାନଟି ଏବେ ବି 'ସତୀ କୁଣ୍ଡ' ନାମରେ

ପରିଚିତ। ଶିଶୁପୁତ୍ର ଅର୍ଜ୍ଜୁନ ଦେବଙ୍କୁ ରାଜକର୍ମଚାରୀ ବିଶ୍ୱନାଥ ନେଇ ଗୁପ୍ତରେ ରଖିଲେ ଏବଂ ପରେ ଅର୍ଜ୍ଜୁନ ଦେବଙ୍କୁ ଗାଦିନସୀନ କଲେ।

## ବାଲୁଙ୍କା ବୃଷଭ ଦେବ

ରାଜା ବାଲୁଙ୍କା ବୃଷଭ ଦେବ ହେଉଛନ୍ତି ବାମଣ୍ଡାର ଚତୁର୍ବିଂଶତି ରାଜା। ସେ ତ୍ରିଭୁବନଦେବ ଉପାଧି ଗ୍ରହଣ କରି ବାମଣ୍ଡା ରାଜଗାଦିରେ ଅଧିରୂଢ଼ ହେଲେ। ୧୮୦୩ ମସିହାରେ ଇଂରେଜ ଓ ମରହଟ୍ଟା ମାନଙ୍କ ମଧ୍ୟରେ ଦେଓ ଗାଁରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା। ଫଳରେ ମରହଟ୍ଟା ମାନେ ସମ୍ବଲପୁର ଅଞ୍ଚଳ ଫେରି ପାଇଲେ। ଏହା ବିରୁଦ୍ଧରେ ରାଜା ସମ୍ବଲପୁର ମହାରାଣୀ ଓ ଅନ୍ୟ ଜମିଦାରଙ୍କ ସହ ମିଶି ମରହଟ୍ଟା ଶକ୍ତିକୁ ପ୍ରତିରୋଧ କରିବାକୁ ଉଦ୍ୟମ କଲେ। ଅନ୍ୟପକ୍ଷରେ, ମରହଟ୍ଟା ମାନେ ଓଡ଼ିଶାର ପଶ୍ଚିମାଞ୍ଚଳ ତଥା ଗଡ଼ଜାତ ମାନଙ୍କରେ ଅତ୍ୟାଚାର, ଲୁଣ୍ଠନ ଆଦି କରି ରାଜା ଓ ପ୍ରଜାମାନଙ୍କୁ ବ୍ୟତିବ୍ୟସ୍ତ କରିଦେଲେ। ମରହଟ୍ଟାମାନେ ଭୂପସିଂଙ୍କୁ ସମ୍ବଲପୁରର କାମଦାର ବା ଜେନେରାଲ ମେନେଜର ପଦରେ ନିଯୁକ୍ତ କରିଥିଲେ। ସେ ରୟତ ଓ ଜମିଦାରମାନଙ୍କ ନିକଟରୁ ଅଧିକ ଖଜଣା ଅସୁଲ କରିବାରୁ ରାଜ୍ୟରେ ଅସନ୍ତୋଷ ବଢ଼ିଲା। ମାଲିକଙ୍କ ସହ ମତାନ୍ତର ହେବା ଫଳରେ ଭୂପସିଂ ରାଣୀ ରତନ କୁମାରୀଙ୍କୁ ବାମଣ୍ଡା ଅଞ୍ଚଳର ଏକ ନିରାପଦ ସ୍ଥାନ ସୁଲଟିକିରା ନାମକ ବଣରେ ରଖିଦେଇ ନିଜେ ହଜାରିବାଗକୁ ଚାଲି ଯାଇଥିଲେ। ରାଣୀ ବାମଣ୍ଡାର ସେହି ବଣରେ ଚାରିବର୍ଷ କାଳ ଅତିବାହିତ କରିଥିଲେ। ୧୮୦୪ ଖ୍ରୀଷ୍ଟାବ୍ଦରେ କର୍ଣ୍ଣେଲ ବ୍ରାଉଟନ୍ ଓ କ୍ୟାପଟେନ୍ ରଗ୍‌ସେଜ୍ ମରହଟ୍ଟାମାନଙ୍କୁ ସମ୍ବଲପୁରରୁ ତଡ଼ିଦେଇ ରତନକୁମାରୀଙ୍କୁ ଡ଼ାକି ଆଣି ରାଜଗାଦିରେ ବସାଇଲେ। ଅବସ୍ଥା ଅସମ୍ଭାଳ ହେବାରୁ ସମ୍ବଲପୁର ରାଣୀ ରତନ୍‌କୁମାରୀ ଓ ଅନ୍ୟାନ୍ୟ ରାଜା, ଜମିଦାର ମାନେ ୧୮୦୪ ମସିହା ମାର୍ଚ୍ଚ ୨୯ ତାରିଖରେ ଲେଫ୍‌ଟନେଣ୍ଟ କର୍ଣ୍ଣେଲ ବ୍ରାଉଟନ୍‌ଙ୍କ ପାଖକୁ ଏକ ପତ୍ର ଇଂରେଜୀରେ ଲେଖିଥିଲେ ତାର ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା।

"ଯଥାମାନ୍ୟ ପରେ –

ଆମ୍ଭମାନଙ୍କୁ ଯେଉଁ ପତ୍ର ଦେଇ ଅନୁଗୃହୀତ କରଛନ୍ତି, ସେ ପତ୍ରର ମର୍ମ ଯତ୍ନ ସହକାରେ ବିଚାର କଲୁଁ।

ବ୍ରିଟିଶ୍ ସରକାର ଯେଉଁ ସବୁ ସ୍ୱୀକୃତି ଦେଲେ ତଦନୁସାରେ ଆମ୍ଭେମାନେ ସ୍ୱତଃ ପ୍ରଣୋଦିତ ହୋଇ ସେମାନଙ୍କର ଆଧୀନ୍ୟ ସ୍ୱୀକାର କଲୁ। ଆପଣଙ୍କ ଉପରେ ଆମ୍ଭମାନଙ୍କର ସୁରକ୍ଷା, ଆଶା, ଆକାଂକ୍ଷା ଏବଂ ଅଭିବୃଦ୍ଧି ନିର୍ଭର କରେ। ମରହଟ୍ଟା ସରକାରଙ୍କ ଅଧୀନରେ କଦାପି ଆମ୍ଭମାନଙ୍କର ମଙ୍ଗଳ ହୋଇନାହିଁ ଏବଂ ହେବନାହିଁ। ପ୍ରକୃତରେ ସେମାନଙ୍କ ତଳେ ଆମ୍ଭମାନଙ୍କ ବଂଶର ମାନସମ୍ମାନ ଓ ଧନସମ୍ପତ୍ତି ସବୁବେଳେ ବିପନ୍ନ ଅବସ୍ଥାରେ ଥିଲା। ସେମାନଙ୍କର ଅତ୍ୟାଚାରରେ ଆମ୍ଭେମାନେ ଜର୍ଜରିତ ହୋଇ ସାରିଛୁଁ। ଆମ୍ଭମାନଙ୍କର ବଂଶମର୍ଯ୍ୟାଦା ଏବଂ ଧନସମ୍ପତ୍ତି ବିପନ୍ନ ହୋଇ ସାରିଥିବା ସ୍ଥଳେ କିପରି ଆମ୍ଭେମାନେ ସ୍ୱତଃ ପ୍ରଣୋଦିତ ହୋଇ ସେମାନଙ୍କର ଶାସନକୁ ପୁନର୍ବାର ବରଣ କରିବୁଁ ଏବଂ କିପରି ନିରାପତ୍ତା ଅନୁଭବ କରିବୁଁ? ଆମ୍ଭେମାନେ ବ୍ରିଟିଶ ଶାସନତଳେ ରହିବାକୁ ସର୍ବାନ୍ତକରଣରେ ଇଚ୍ଛା କରିଛୁଁ ଏବଂ ଆପଣଙ୍କର ଅନୁଗ୍ରହ ଉପରେ ନିର୍ଭର କରିଛୁଁ। ଆପଣ ଯେ କର ବିଷୟରେ ଲେଖିଛନ୍ତି ତାର ଉତ୍ତରରେ ଆମ୍ଭେମାନେ ଏହା ଲେଖୁଛୁଁ ଯେ ଆମ୍ଭେମାନେ ପୂର୍ବରୁ ନିଜ ନିଜର ଦେୟ ଆମ୍ଭରାଜାଙ୍କୁ (ସମ୍ବଲପୁର ରାଜା) ଦେଉଥିଲୁଁ ଓ ସେ ତାହା ମରହଟ୍ଟାଙ୍କୁ ବୁଝାଇ ଦେଉଥିଲେ। କିନ୍ତୁ ୩ ବର୍ଷ ପୂର୍ବେ ଯେତେବେଳେ ସେମାନେ ରାଜ୍ୟ ସବୁ ଅଧିକାର କଲେସେଦିନରୁ କୌଣସି ଚୁକ୍ତି ହୋଇନାହିଁ। ସେମାନେ ବଳାତ୍କାରରେ ଓ ଅତ୍ୟାଚାର କରି ଯାହା ପାଇଲେ, ତାହା ଅସୁଲ କରୁଛନ୍ତି। ସେମାନଙ୍କର ହିସାବପତ୍ରରୁ ତାହା ଆପଣ ଜାଣିପାରିବେ। ଆପଣ ଆମ୍ଭମାନଙ୍କର ମାଲିକ। ଅନୁଗ୍ରହ କରି ଆପଣ ଆମ୍ଭମାନଙ୍କର ଶକ୍ତି ଓ ଜମିର ଉତ୍ପାଦିକ ଶକ୍ତିକୁ ବିଚାର କରି ଯାହା ଉଚିତ୍ କର ଧାର୍ଯ୍ୟ କରିଦେବେ, ତାହା ଅକୁଣ୍ଠିତ ଓ ନିୟମିତ ଭାବରେ ଆମ୍ଭେମାନେ ଦାଖଲ କରିବୁ। ସଦାବେଳେ ଆମ୍ଭେମାନେ ଓ ଆମ୍ଭମାନଙ୍କର ପରିବାର ବର୍ଗ କମ୍ପାନୀ ସରକାରଙ୍କୁ ରାଜଭକ୍ତି ଓ ଆଧିନ୍ୟ ଦେଖାଇବୁଁ ଏବଂ ଅନ୍ୟ କାହାରି ପ୍ରଭୁତ୍ୱ ମାନିବୁ ନାହିଁ। ଆପଣ ଆମ୍ଭମାନଙ୍କର ରକ୍ଷାକର୍ତ୍ତା ଏବଂ କିପରି ଆମ୍ଭେମାନେ ଚିରଦିନ ବ୍ରିଟିଶ ସରକାରଙ୍କ ଅଧୀନରେ ରହିପାରିବୁ, ତାହାର ବ୍ୟବସ୍ଥା କରିଦେବେ ବୋଲି ଆଶା କରୁଁ।

ସ୍ୱାକ୍ଷରକାରୀ -

ରାଣୀ ରତନ କୋହର - ସମ୍ବଲପୁର ରାଣୀ

ରାଜା ଜୁଜର ସିଂ - ରାୟଗଣ

ରାଜା ବିଶ୍ୱନାଥ ସାହି - ସାରଙ୍ଗଗଡ଼

ବାଉରିଆ ରାଣୀ ଲକ୍ଷ୍ମୀପ୍ରିୟା - ସୋନପୁର

ବୀରବୁଧ (ବୀରଭଦ୍ର ?) ଜେନା - ଲେରାକୋଲ (ରେଢ଼ାଖୋଲ)

ରାଜା ଇନ୍ଦର ସୁଅର (ଇନ୍ଦ୍ରେଶ୍ୱର ?) ଦେଓ - ଗାଙ୍ଗପୁର

ରାଜା ତ୍ରିଭୁବନ ଦେଓ - ବାମରା (ବାମଣ୍ଡା)

ରାଜା ଇନ୍ଦର (ଇନ୍ଦ୍ର) ଦେଓ - ବନିଲ (ବଣାଇ)

ଦେବା ଶିବ ସିଂହ - ଶକ୍ତି

ଠାକୁର ରଣଜିତ ସିଂହ - ବରଗଡ଼

(ଅବିକଳ ଅନୁବାଦ)

ଇ.ଏସ୍. ବ୍ରାଉଟନ୍

ଲେପ୍ଟନାଣ୍ଟ କର୍ଣ୍ଣେଲ[୧୦]

୧୮୧୭ରେ ତୃତୀୟ ମରହଟ୍ଟା ସମର ଶେଷ ହେବା ପରେ ଗଡଜାତ ମାନଙ୍କରେ ମରହଟ୍ଟା ଶାସନର ଅବସାନ ହେଲା ଓ ଇଂରେଜ ଶାସନ ପ୍ରତିଷ୍ଠା ହେଲା। ଏହାପରେ ବାମଣ୍ଡା ସମ୍ବଲପୁର ରାଜା ଅଧୀନରେ ନରହି ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା ଏବଂ ୧୮୨୬ ଖ୍ରୀ: ରେ ବାମଣ୍ଡା ରାଜା ଇଂରେଜମାନଙ୍କ ଠାରୁ ଏକ ନୂତନ ସନନ୍ଦ ପାଇଲେ। ବାମଣ୍ଡା କରଦ ରାଜ୍ୟ ରୂପେ ରହିଲା।

ବଙ୍ଗଳାର ଗଭର୍ଣ୍ଣର ଜେନେରାଲଙ୍କ ପ୍ରତିନିଧି ଓସଲେ ତାଙ୍କ ଟୁର୍‌ଡାଏରୀରେ ଲେଖିଛନ୍ତି ଯେ ୧୮୪୦-୪୧ ଖ୍ରୀ: ରେ ବାମଣ୍ଡା ରାଜା ସମ୍ବଲପୁର ରାଜ ନାରାୟଣ ଦେଓଙ୍କୁ ରାଜସ୍ୱ ଆକାରରେ ବର୍ଷକୁ ଟ.୩୪୦ଙ୍କା (ତିନିଶହ ଚାଳିଶି ଟଙ୍କା) ମାତ୍ର ଦେଉଥିଲେ।

---

[୧୦] ବୀର ସୁରେନ୍ଦ୍ର ସାଏ - ପୃଷ୍ଠା - ୨୭୮ - ୨୭୯ - ଅନିରୁଦ୍ଧ ଦାଶ

## ବ୍ରଜସୁନ୍ଦର ଦେବ

ଷଡବିଂଶ ରାଜା ବ୍ରଜସୁନ୍ଦର ଦେବଙ୍କ ଶାସନ କାଳରେ ଇଂରେଜମାନେ ଶାସନ ପ୍ରବର୍ତ୍ତନ ଏବଂ  ସେମାନଙ୍କର ବିରୁଦ୍ଧରେ ଆଦିବାସୀଙ୍କ ସଂଗ୍ରାମ ଯୋଗୁଁ ରାଜା ବହୁ ସଙ୍କଟମୟ ପରିସ୍ଥିତି ଦେଇ ଶାସନକାର୍ଯ୍ୟ ପରିଚାଳନା କରିଥିଲେ। ଇଷ୍ଟଇଣ୍ଡିଆ କମ୍ପାନୀର ଆଧିପତ୍ୟକୁ ସ୍ଥାନୀୟ ଲୋକେ ସ୍ୱୀକାର କରିବାକୁ ରାଜି ନଥିଲେ। ଇଂରେଜ ଶାସନ ବିରୁଦ୍ଧରେ ୧୮୪୯ରେ ଅନୁଗୁଳରେ ବିଦ୍ରୋହ ହେଲା। ଅନୁଗୁଳ ରାଜା ସ୍ୱାଧୀନ ହେବାକୁ ଚାହିଁଲେ। ବିଦ୍ରୋହ ଦମନ ପାଇଁ କମ୍ପାନୀ କଟକ ଓ ରାଞ୍ଚିରୁ ଇଂରେଜ ସୈନ୍ୟ ପ୍ରେରଣ କଲେ। ଅନୁଗୁଳ ରାଜାଙ୍କୁ ବନ୍ଦୀ କରିବା ପାଇଁ ସମ୍ବଲପୁରର ରାୟ ରୂପସିଂହ ଓ ବାମଣ୍ଡାର ରାଜା ବ୍ରଜସୁନ୍ଦର ଦେବ ଇଂରେଜମାନଙ୍କୁ ସାହାଯ୍ୟ କଲେ। ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବ ଅନିଚ୍ଛାସତ୍ତ୍ୱେ କ୍ୟାପ୍‌ଟେନ୍ ଉଇଲକିନ୍‌ସନଙ୍କ ଧମକରେ ବିପ୍ଳବୀ ମାନଙ୍କୁ ଧରାଇ ଦେବାକୁ ପ୍ରତିଶ୍ରୁତି ଦେଲେ। ବିପ୍ଳବୀମାନେ ଧରାପଡ଼ିଲେ।  ଏଥିରେ ସଫଳତା ପାଇଁ ସେ ଗୌନ୍ତିଆ ଓ ଜମିଦାର ମାନଙ୍କୁ ଏହି ଆଦେଶ ଦେଇଥିଲେ। ଅନୁଗୁଳ ରାଜଙ୍କୁ ବନ୍ଦୀ କରି ହଜାରୀବାଗ ଜେଲକୁ ପଠାଗଲା ଏବଂ ଅନୁଗୁଳକୁ ଖାସ୍ ମାହଲରେ ପରିଣତ କରାଗଲା। ଅନୁଗଳ ରାଜାଙ୍କ ମୃତ୍ୟୁ ହେଲା ହଜାରୀବାଗ୍ ବନ୍ଦୀଶାଳାରେ। ଇଂରେଜ ଶାସକଙ୍କଠାରୁ ପୁରସ୍କାର ସ୍ୱରୂପ ରାୟ ରୂପସିଂହ 'ଖିଲାତ୍' ଓ ବ୍ରଜସୁନ୍ଦର ଦେବ 'ମହାରାଜା ବାହାଦୂର' ଉପାଧି ପାଇଥିଲେ। ତତ୍ ସଙ୍ଗେ ବାମଣ୍ଡା ରାଜାଙ୍କୁ ଗୋଟିଏ ହାତୀ ଓ ପିତଳ ନିର୍ମିତ ଏକ ବୃହତ୍ ତୋପ ଦିଆଗଲା। ଏହାପରେ ବାମଣ୍ଡା ରାଜା ଇଂରେଜ କର୍ତ୍ତୃପକ୍ଷଙ୍କୁ ଏକ ପ୍ରସ୍ତାବ ଦେଲେ ଯେ ସୁରେନ୍ଦ୍ର ସାଏଙ୍କୁ ରାଜଗାଦିରେ ବସାଯାଉ। ଏଥିରେ କଟକ କମିଶନର ଅସମ୍ମତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ବାମଣ୍ଡା ରାଜାଙ୍କୁ ତାଗିଦ୍ କରି ସେକ୍ରେଟେରୀଙ୍କ ପାଖକୁ ଚିଠି ନମ୍ବର ୨୯୭/୩୦-୧୧-୧୮୫୭ରେ ଏ ବିଷୟରେ ଜଣାଇଦେଲେ ଯେ, ବାମଣ୍ଡା ରାଜାଙ୍କୁ ପରଓ୍ୱାନା ଜାରି କରାଯାଉଛି। ଯଦି ରାଜା ସୁରେନ୍ଦ୍ରଙ୍କୁ ସମର୍ଥନ କରନ୍ତି, ତେବେ ତାଙ୍କୁ ଅନୁଗୁଳ ରାଜାଙ୍କ ଅବସ୍ଥା ଭୋଗ କରିବାକୁ ପଡିବ।[୧୧]

---

[୧୧] ସୁରେନ୍ଦ୍ର ସାଏ – ଅଧ୍ୟାପକ ରାଧାକାନ୍ତ ମିଶ୍ର

ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହରେ ଅଂଶଗ୍ରହଣ କରିଥିବା ୨୬ ଜଣ ବିଦ୍ରୋହୀଙ୍କ ମଧ୍ୟରୁ ବାମଣ୍ଡାର କୃପାସିନ୍ଧୁ ବେହେରା ଅନ୍ୟତମ। ବିଦ୍ରୋହୀ ମାନଙ୍କ ମଧ୍ୟରୁ ଜଗବନ୍ଧୁ ବାବୁ, ରେହା ବିଶ୍ୱାଳ, ବଡ଼ କନ୍ଧ, ଡମ୍ବରୁ କନ୍ଧ, ଶୋଭନାଥ ଗଣ୍ଡ ଆଦି କେତେଜଣ ଫାଶୀ ପାଇଲେ। ବାମଣ୍ଡା ରାଜା ଇଂରେଜ ସରକାରଙ୍କୁ ସାହାଯ୍ୟ କରୁଥିବା ସମ୍ବାଦ ପାଇ ସୁରେନ୍ଦ୍ର କୌଶଳକ୍ରମେ ରାଜା ବ୍ରଜସୁନ୍ଦର ଦେବଙ୍କୁ ନିଜ ଶିବିରକୁ ନେଇ ଯାଇଥିଲେ। ଏ ସମ୍ବାଦ ବ୍ରିଟିଶ ସରକାର ପାଇ ବିଦ୍ରୋହୀଙ୍କ ଶିବିର ଉପରେ ଚଢ଼ାଉ କରିବା ବେଳେ ରାଜା ତାର ସୁଯୋଗ ନେଇ ଶିବିରରୁ ଖସି ପଳାଇଲେ ଏବଂ ଇଂରେଜ ସରକାରଙ୍କୁ ସାହାଯ୍ୟ କଲେ। ବିଦ୍ରୋହୀ ମାନେ ରାଜାଙ୍କୁ ଅପହରଣ କରିନେବାର ଅନ୍ୟ ଏକ କାରଣ ଥିଲା ଯେ ସେ ଦେଶୀୟ ରାଜ୍ୟ ଗୁଡ଼ିକର ସୁପରିନ୍‌ଟେଣ୍ଡେଣ୍ଟଙ୍କ ସହକାରୀ ବ୍ରହ୍ମାନନ୍ଦ ଦାସଙ୍କ ନିକଟକୁ ୧୮୫୭ ସାଲ ଡିସେମ୍ବର ୮ ତାରିଖରେ ଏକ ଚିଠି ଲେଖିଥିଲେ। ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ସେ ସୁରେନ୍ଦ୍ର ସାଏଙ୍କ ସହ ଯୁଦ୍ଧ କରିବାକୁ ବା ପରିସ୍ଥିତିର ସମାଧାନ କରିବାକୁ ପ୍ରସ୍ତୁତ ଅଛନ୍ତି କିନ୍ତୁ ସୁରେନ୍ଦ୍ରଙ୍କ ଦୁର୍ଦ୍ଧର୍ଷ ଶକ୍ତି ସହ ଯୁଦ୍ଧ କରିବାକୁ ହେଲେ ବିରାଟ ସୈନ୍ୟବାହିନୀର ଆବଶ୍ୟକ। ଏ ଚିଠି ପାଇ ମେଜର ଇମ୍ପେ ମୁଷ୍ଟିମେୟ ସୈନ୍ୟ ପଠାଇଲେ। ଏ ଘଟଣାରୁ ବିଦ୍ରୋହୀ ମାନଙ୍କର ଦୃଢ଼ ଧାରଣା ହେଲା ଯେ ବାମଣ୍ଡା ରାଜା ସୁରେନ୍ଦ୍ରଙ୍କ ସମର୍ଥକ ଅଟନ୍ତି, ଫଳରେ ରାଜାଙ୍କୁ ଅପହରଣ କରିନେଲେ।

୧୮୬୧ ମାର୍ଚ୍ଚ ୧୨ ତାରିଖରେ ମେଜର ହେଷ୍ଟିଂସ୍ ବି. ଇମ୍ପେ ସମ୍ବଲପୁରରେ ଡେପୁଟି କମିଶନର ରୂପେ ଯୋଗଦାନ କଲେ। ସେ ଜାଣିବାକୁ ପାଇଲେ ଯେ ଦଳେ ବିଦ୍ରୋହୀ ଅଖୋଜ ବାମଣ୍ଡାର ଘନ ଜଙ୍ଗଲ ଭିତରେ ଆଶ୍ରୟ ନେଉଛନ୍ତି। ସେ ଜଙ୍ଗଲ ମଧ୍ୟରୁ ସେମାନଙ୍କୁ ଖୋଜି ବାହାର କରିବା ସହଜସାଧ୍ୟ ନୁହେଁ। ମେଜର ଇମ୍ପେ ସାରଙ୍ଗଗଡ଼, ପାଟଣା ଓ ବାମଣ୍ଡାର ରାଜାମାନଙ୍କୁ ଜଣାଇ ଦେଲେ ଯେ ଉକ୍ତ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତୁ। ଏ ସମ୍ବାଦ ବିଦ୍ରୋହୀ ମାନଙ୍କ ନିକଟରେ ପହଞ୍ଚିଲା। ସେମାନେ ଜନସାଧାରଣଙ୍କୁ ଏକଥା ଅବଗତ କରାଇ ସେମାନଙ୍କର ସମର୍ଥନ ଲୋଡିଲେ ଏବଂ ବିଦେଶୀ ଶକ୍ତି ବିରୁଦ୍ଧରେ ଲଢ଼େଇ କରିବାକୁ ପ୍ରବର୍ତ୍ତାଇଲେ। ଏତଦ୍‌ବ୍ୟତୀତ, ରାଜା ଜମିଦାର ମାନଙ୍କୁ ସତର୍କ କରାଇଦେଲେ ଯେ ସେମାନେ ଇଂରେଜମାନଙ୍କୁ ସମର୍ଥନ କଲେ ଭୀଷଣ ପରିସ୍ଥିତିର

ସମ୍ମୁଖୀନ ହେବେ। ଏ ବିଷୟରେ ମେଜର ଇମ୍ପେ ଯେତେବେଳେ ଜାଣିଲେ ନିଜ ଭୁଲ୍ ବୁଝିପାରି କେପ୍‌ଟେନ୍ ବର୍ଚ୍ଚଙ୍କୁ ବିଦ୍ରୋହୀ ମାନଙ୍କ ସହ ବୁଝାମଣା କରିବାକୁ ବାମଣ୍ଡା ପଠାଇଲେ। ସେ ରାଜା ଓ କେତେକ ବିଶ୍ୱସ୍ତ କନ୍ଧଙ୍କ ସହ ମିଶି ବିଦ୍ରୋହୀ ମାନଙ୍କ ସହ ବୁଝାମଣା କଲେ।[୧୨]

ବ୍ରିଟିଶ୍ ସରକାରଙ୍କ ତାଗିଦ୍ ସତ୍ତ୍ୱେ ବି କେତେକ ରାଜା ସୁରେନ୍ଦ୍ର ସାଏଙ୍କୁ ସମର୍ଥନ ଅବ୍ୟାହତ ରଖିଥିଲେ।

ଗଡ଼ଜାତ ରାଜାମାନେ ସମ୍ବଲପୁରର ନେତୃତ୍ୱକୁ ମାନିନେଇ ନିଜ ନିଜ ରାଜ୍ୟରେ ସ୍ୱାଧୀନ ଭାବେ ମନ ମୁତାବକ ଶାସନ ଚଳାଉଥିଲେ। ଗଡ଼ଜାତ ରାଜାମାନଙ୍କ ମଧ୍ୟରେ ମନୋମାଳିନ୍ୟ ବା ବିବାଦ ହେଲେ ସମ୍ବଲପୁର ଶାସକ ହସ୍ତକ୍ଷେପ କରୁଥିଲେ, ଏପରିକି ଆବଶ୍ୟକସ୍ଥଳେ ସୈନ୍ୟ ପରିଚାଳନା ମଧ୍ୟ କରୁଥିଲେ। ସମ୍ବଲପୁର ରାଜାଙ୍କ ଅଭିଷେକ ବେଳେ ରାଜାମାନଙ୍କ ଉପସ୍ଥିତି ବାଧ୍ୟତାମୂଳକ ଥିଲା ଏବଂ ସେମାନେ ରାଜାଙ୍କୁ ଭେଟି ଦେଇ ସମ୍ମାନ ଜଣାଉଥିଲେ।

**ରାଜା ବ୍ରଜସୁନ୍ଦର ଦେବଙ୍କ ବିକାଶ ମୂଳକ କାର୍ଯ୍ୟ** – ରାଜା ପ୍ରତାପରୁଦ୍ର ଦେବଙ୍କ ନିର୍ମିତ ଜୀର୍ଣ୍ଣ ଜଗନ୍ନାଥ ମନ୍ଦିର ସଂସ୍କାର, ବ୍ରଜବିହାରୀପୁରର ଗୋକର୍ଣ୍ଣେଶ୍ୱର ମନ୍ଦିର ନିର୍ମାଣ ଓ ଗୋକର୍ଣ୍ଣେଶ୍ୱରଙ୍କ ମୂର୍ତ୍ତି ସ୍ଥାପନ, ପ୍ରଧାନପାଟ ନିକଟରେ ଗିରିଗୋବର୍ଦ୍ଧନ ମନ୍ଦିର ଓ ପୁରୁଣାଗଡ଼ରେ ପାପହରଣ କୁଣ୍ଡ ନିର୍ମାଣ କରିଥିଲେ।

ବ୍ରଜସୁନ୍ଦର ଦେବଙ୍କ ଅନ୍ୟ ଏକ ମହତ୍ କୀର୍ତ୍ତି ହେଉଛି ଦେବଗଡ଼ରେ ସଂସ୍କୃତ ବିଦ୍ୟାଳୟର ସ୍ଥାପନ। ସେ ଥିଲେ ବାମଣ୍ଡାର ଉତ୍ତରାଧିକାରୀ ରାଜାମାନଙ୍କର ପ୍ରେରଣାର ଉତ୍ସ। ପରବର୍ତ୍ତୀ ରାଜା ବାସୁଦେବ ସୁଢ଼ଳଦେବ ବ୍ରଜସୁନ୍ଦରଙ୍କ ଠାରୁ ପ୍ରେରଣା ଲାଭ କରି ବାମଣ୍ଡାକୁ ଏକ ଆଦର୍ଶ ରାଜ୍ୟରେ ପରିଣତ କରିବାକୁ ଚାହିଁଥିଲେ। ଫଳରେ ବାମଣ୍ଡା ତାଙ୍କ ସମୟରେ 'ଉତ୍କଳର ଉଜ୍ଜୟିନୀ' ନାମରେ ଖ୍ୟାତି ଲାଭ କରିଥିଲା।

ବ୍ରଜସୁନ୍ଦର ସର୍ପବିଦ୍ୟା ବିଶାରଦ ଥିଲେ। ଏଣୁ ରାଜ୍ୟବାସୀ ତାଙ୍କୁ 'ସାପୁଆ ରାଜା' ବୋଲି କହନ୍ତି। କୁହାଯାଏ ସେ, ସାଧାରଣତଃ ରାଜା ଗ୍ରୀଷ୍ମଋତୁରେ ସୌନ୍ଦର୍ଯ୍ୟର ଗନ୍ତାଘର ଅରଣ୍ୟ ପରିବେଷ୍ଟିତ ପ୍ରଧାନପାଟ ଜଳପ୍ରପାତ ଅଞ୍ଚଳକୁ ସାଂଧ୍ୟ ଭ୍ରମଣରେ

---

[୧୨] ଓଡ଼ିଶା ଗେଜେଟିୟର, ୧୯୭୧, ସମ୍ବଲପୁର

ଯାଆନ୍ତି। ଦିନେ ଏପରି ସାଂଧ ଭ୍ରମଣରେ ଯାଇଥିବା ବେଳେ ସମ୍ବାଦ ପାଇଲେ ଯେ ଜଣେ ବ୍ୟକ୍ତିଙ୍କୁ ବିଷାକ୍ତ ନାଗସାପ ଦଂଶନ କରିଛି। ରାଜା ତତ୍‌କ୍ଷଣାତ୍ ସେ ସ୍ଥାନକୁ ଯାଇ ନାଗସାପକୁ ଧରିବାରୁ ନାଗସାପ ଦଂଶନ କଲା। ନାଗସାପର ଉତ୍କଟ ବିଷର ସଂକ୍ରମଣରେ ରାଜା ପ୍ରାଣତ୍ୟାଗ କଲେ। ରାଜା ବ୍ରଜସୁନ୍ଦର ବଡ଼କୁମର ହରିହର ଦେବଙ୍କ ଏକମାତ୍ର ପୁତ୍ର ବାସୁଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ବାମଣ୍ଡା ରାଜସିଂହାସନର ଉତ୍ତରାଧିକାରୀ ରୂପେ ଘୋଷଣା କରିଥିଲେ।

## ରାଜା ସାର୍ ବାସୁଦେବ ସୁଢ଼ଳ ଦେବ

ରାଜା ସାର୍ ବାସୁଦେବ ସୁଢ଼ଳଦେବ ହେଉଛନ୍ତି ବାମଣ୍ଡାର ସପ୍ତବିଂଶତି ରାଜା। ଯଦିଓ ରାଜା ବ୍ରଜସୁନ୍ଦରଙ୍କ ବୃନ୍ଦାବନଚନ୍ଦ୍ର ଦେବ ନାମରେ ଏକ ପୁତ୍ର ଥିଲେ, ସେ କୌଣସି କାରଣ ବଶତଃ ତାଙ୍କୁ ରାଜସିଂହାସନର ଉତ୍ତରାଧିକାରୀ ନକରି ଭ୍ରାତୃଷ୍ପୁତ୍ର ବାସୁଦେବଙ୍କୁ ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ। ବ୍ରଜସୁନ୍ଦରଙ୍କ ତିରୋଧାନ ସମୟରେ ବାସୁଦେବ ଶାସନ ସମ୍ବନ୍ଧରେ ଅନଭିଜ୍ଞଥିବାରୁ ବ୍ରଜସୁନ୍ଦରଙ୍କ ଭାଇ ବଡକୁମର ହରିହର ଦେବ ତିନିବର୍ଷ କାଳ ରାଜ୍ୟ ଶାସନ ଦାୟିତ୍ୱରେ ଥିଲେ। ଯଦିଓ ବାସୁଦେବ ୧୮୬୮ରେ ରାଜସିଂହାସନ ଆରୋହଣ କଲେ। ରାଜା ବାସୁଦେବ ୧୮୭୨ ସାଲରେ ରାଜ୍ୟର ପ୍ରତ୍ୟକ୍ଷ ଶାସନଭାର ଗ୍ରହଣ କଲେ। ସେ ଥିଲେ ବହୁଦିଗ୍‌ଦର୍ଶୀ। ରାଜ୍ୟର ଦୁରାବସ୍ଥାକୁ ସୁଧାରିବା ପାଇଁ ସେ ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟର ପରିକଳ୍ପନା କଲେ। ସେତେବେଳେ ଘନ ଜଙ୍ଗଲ ମଧ୍ୟରେ ଅବସ୍ଥିତ ପଲ୍ଲୀମାନଙ୍କ ସମେତ ରାଜ୍ୟର ମୋଟ ଲୋକସଂଖ୍ୟା ଥିଲା ୮୧,୨୮୬। ପ୍ରଜାଙ୍କ ପ୍ରଧାନ ଉପଜୀବ୍ୟ କୃଷି ଥିବାରୁ ରାଜା ପ୍ରଥମ ପଦକ୍ଷେପ ସ୍ୱରୂପ ଭୂସଂସ୍କାର କାର୍ଯ୍ୟ ଆରମ୍ଭ କଲେ।

୧୮୭୭ ସାଲରେ ରାଜ୍ୟର ଜମି ମାପ କରି ପ୍ରଜାମାନଙ୍କ ନାମରେ ବନ୍ଦୋବସ୍ତ କରାଗଲା। କୃଷିକ୍ଷେତ୍ରକୁ ତିନିଭାଗରେ ବିଭକ୍ତ କରି ଊ୍ୟଲ, ହୟଂ ଓ ସ୍ୱୟଂସରଦର ନାମକରଣ କରି ତଦନୁଯାୟୀ ଖଜଣାଧାର୍ଯ୍ୟ କରାଗଲା। ଫଳରେ ରାଜ୍ୟର ରାଜସ୍ୱ ବୃଦ୍ଧି ସହ କୃଷିର ଉନ୍ନତି ହେଲା। ଏତଦ୍‌ବ୍ୟତୀତ ଜଳସେଚନର ସୁବିଧାନିମନ୍ତେ ବିଭିନ୍ନ ସ୍ଥାନରେ ବନ୍ଧ, ପୋଖରୀ କେନାଲ ଆଦି ଖୋଳାଗଲା। ଏପରିକି, ପାର୍ବତ୍ୟ ଜଳଧାରାରୁ ନିୟନ୍ତ୍ରଣ କରି ଆବଶ୍ୟକ ସ୍ଥଳେ ବ୍ୟବହାର କରିବାର ବ୍ୟବସ୍ଥା ହେଲା।

ପ୍ରଜାମାନଙ୍କୁ ଉନ୍ନତ କୃଷି ପ୍ରଣାଳୀ ଶିକ୍ଷା ଦେବାପାଇଁ ଦେବଗଡ଼ ନିକଟବର୍ତ୍ତୀ ବଳମ ଗ୍ରାମରେ ୨୦୦୦ ଏକର ପରିମିତ ସ୍ଥାନରେ ଏକ କୃଷି ଫାର୍ମର ବ୍ୟବସ୍ଥା ହେଲା । ସେଠାରେ ଦେଶ ବିଦେଶରୁ ଉନ୍ନତ ଧରଣର ଚାରା ଆଣି ଫଳଚାଷ ମଧ୍ୟ କରାଗଲା ।

ରାଜା ଅନୁଭବ କଲେ ଯେ କେବଳ କୃଷିଦ୍ୱାରା ରାଜ୍ୟର ଆର୍ଥିକ ବିକାଶ ସମ୍ଭବ ନୁହେଁ, ତେଣୁ ବାଣିଜ୍ୟ କ୍ଷେତ୍ରରେ କିପରି ବିକାଶ ଘଟିବ ସେଥିପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କଲେ । ପ୍ରଥମତଃ, କୃଷିଲବ୍ଧ ଦ୍ରବ୍ୟକୁ ବିକ୍ରୟ ପାଇଁ କଟକଠାରେ ବିକ୍ରୟ କେନ୍ଦ୍ର ଖୋଲିଲେ । ରାଜ୍ୟ ବନ୍ୟସମ୍ପଦରେ ଭରପୂର ଥିବାରୁ ତାକୁ କିପରି ଉପଯୋଗ କରାଯାଇ ପାରିବ, ସେ ବିଷୟରେ ଚିନ୍ତା କରି କାଠ ବ୍ୟବସାୟ ନିମନ୍ତେ କଲିକତାର ବିଭିନ୍ନ ବ୍ୟବସାୟୀ ମାନଙ୍କ ସହ ସଂପର୍କ ସ୍ଥାପନ କଲେ ଏବଂ ବିଲାତରୁ କରତକଳ ଆଣି କାଠଗଣ୍ଡିକୁ ଚିରି କାଠପଟା ରେଲୱେ ବି.ଏନ. ଆର୍. କମ୍ପାନୀକୁ ଯୋଗାଇ ପ୍ରଚୁର ଅର୍ଥ ଉପାର୍ଜନ କଲେ । ଏହା ଫଳରେ ବାମଣ୍ଡାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେଲା ।

ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେବାରୁ ରାଜା ବାସୁଦେବ ବିଭିନ୍ନ ଉନ୍ନୟନ କାର୍ଯ୍ୟ ଆରମ୍ଭ କଲେ । ଗମନାଗମନର ସୁବିଧା ନିମନ୍ତେ ଦେବଗଡ଼ରୁ ଗୋବିନ୍ଦପୁର(ବାମରା) ୧୦୦ କି.ମି. ସଡକ ରାସ୍ତା ସହ କୁଚିଣ୍ଡାର ଦକ୍ଷିଣଦିଗସ୍ଥ ଖର୍ଲା ନଦୀରେ ଝୁଲଣ ପୋଲ ନିର୍ମାଣ କରାଗଲା । ବି.ଏନ୍.ଆର୍ କମ୍ପାନୀକୁ ବାମଣ୍ଡା ରାଜ୍ୟ ସୀମାରେ ରେଳରାସ୍ତା ନିର୍ମାଣ କରି ରେଳ ଚଳାଚଳ କରିବାକୁ ଅନୁମତି ଦେଲେ, ଫଳରେ ବାମଣ୍ଡାର ବାହ୍ୟଜଗତ ସହିତ ସଂପର୍କ ସ୍ଥାପିତ ହେଲା । ପ୍ରଜାମାନଙ୍କ ସୁବିଧା ଦୃଷ୍ଟିରୁ ଦେବଗଡ଼, କୁଚିଣ୍ଡା ଓ ବାରକୋଟ ଠାରେ ତିନୋଟି ତହସିଲ ଅଫିସ ସ୍ଥାପନ କଲେ । ଶାସନର ବିକେନ୍ଦ୍ରୀକରଣ କରି ବିଭିନ୍ନ ବିଭାଗ ସୃଷ୍ଟିକଲେ । ଶାସନ ବିଭାଗ, ଜଙ୍ଗଲ ବିଭାଗ ପ୍ରଭୃତି ସୃଷ୍ଟି କରିବା ଫଳରେ ସମସ୍ତ କାର୍ଯ୍ୟ ଶୃଙ୍ଖଳିତ ହେଲା । ଏତଦ୍ ବ୍ୟତୀତ, ଅପରାଧୀ ମାନଙ୍କୁ ବନ୍ଦୀ କରି ରଖିବା ପାଇଁ କାରାଗୃହ ନିର୍ମାଣ, ଡାକ ଓ ଟେଲିଫୋନ୍ ବିଭାଗ ସ୍ଥାପନ, ଶିକ୍ଷାର ଉନ୍ନତି ପାଇଁ ୧୮୮୨ ସାଲରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା, ଦାତବ୍ୟ ଚିକିତ୍ସାଳୟର ବ୍ୟବସ୍ଥା ଓ ମୁଦ୍ରାଯନ୍ତ୍ର ସ୍ଥାପନ କାର୍ଯ୍ୟକ୍ରମ ଦ୍ୱାରା ଅନୁନ୍ନତ ବାମଣ୍ଡା ଏକ ଉନ୍ନତ ରାଜ୍ୟରେ ପରିଣତ ହେଲା ।

ଓଡ଼ିଆ ଭାଷାର ସଂକଟ କାଳରେ ଭାଷାର ସୁରକ୍ଷା ପାଇଁ ରାଜା ବାସୁଦେବଙ୍କ ଅବଦାନ ଅବିସ୍ମରଣୀୟ। ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ୧୮୮୯ ସାଲରେ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ପତ୍ରିକା ପ୍ରକାଶ କଲେ ଏବଂ ଏହା ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ଉଦ୍ୟମ କଲେ। ରାଜ୍ୟ ତଥା ରାଜ୍ୟ ବାହାରର ପ୍ରଖ୍ୟାତ କବି ଓ ଲେଖକ ମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କୁ ସମ୍ମାନିତ କରିବା ସହ ଉତ୍କଳର ବାଣୀଭଣ୍ଡାରକୁ ସମୃଦ୍ଧ କରିବା ପାଇଁ ସେମାନଙ୍କୁ ଉତ୍ସାହିତ କରୁଥିଲେ। ପ୍ରତିଷ୍ଠିତ ଲେଖକ ତଥା ନୂତନ ଲେଖକମାନଙ୍କୁ ଉତ୍ସାହିତ କରିବାପାଇଁ ସେମାନଙ୍କ ରଚନାବଳୀ ଗୁଡ଼ିକୁ ପ୍ରକାଶ କରିବାର ଭାର ରାଜା ନିଜେ ବହନ କରୁଥିଲେ। ସ୍ୱନାମଧନ୍ୟ କବି କବିବର ରାଧାନାଥ ରାୟ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, ପ୍ରାବନ୍ଧିକ ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ମଧୁସୂଦନ ମିଶ୍ର, ଜଳନ୍ଧର ଦେବ, ରାଜକୁମାର ସଚ୍ଚିଦାନନ୍ଦ ଦେବ ଆଦି ଲେଖକ ଓ କବିଙ୍କ ଦ୍ୱାରା ପ୍ରକାଶିତ ଲେଖାଗୁଡିକ ଦ୍ୱାରା ହିତୈଷିଣୀର ଶ୍ରୀବୃଦ୍ଧି ହେଲା ଏବଂ ବାମଣ୍ଡାର ଯଶ ଓ ଗୌରବ ଓଡ଼ିଶାରେ ପ୍ରସାର ଲାଭ କଲା।

ରାଜା ବାସୁଦେବଙ୍କ ସମୟରେ ପ୍ରଧାନ ପାଟ ଜଳପ୍ରପାତକୁ ଦେବଗଡ଼ ସହରକୁ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା ହେଲା।

ରାଜାଙ୍କର ଏହିସବୁ ଲୋକହିତକର କାର୍ଯ୍ୟ ତଥା ପ୍ରଶାସନିକ ଦକ୍ଷତା ପାଇଁ ୧୮୮୯ ସାଲରେ ବ୍ରିଟିଶ୍ ସରକାର ତାଙ୍କୁ 'କମାଣ୍ଡର ଅଫ୍ ଇଣ୍ଡିଆନ୍ ଅମ୍ପାୟାର' ଓ ୧୮୯୫ ସାଲ୍‌ରେ ସର୍ବୋଚ୍ଚ ଉପାଧି 'ନାଇଟ୍ କମାଣ୍ଡର ଅଫ୍ ଇଣ୍ଡିଆନ୍ ଅମ୍ପାୟାର୍'ରେ ଭୂଷିତ କରିଥିଲେ।

ଏତଦ୍‌ବ୍ୟତୀତ ରାଜା ବାସୁଦେବଙ୍କ ସମାଜ ସଂସ୍କାର ଏକ ବଳିଷ୍ଠ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବନାହିଁ। ସମାଜରେ ପ୍ରଚଳିତ କୁସଂସ୍କାର ଗୁଡ଼ିକର ଦୂରୀକରଣ ପ୍ରତି ସେ ଅଗ୍ରାଧିକାର ଦେଇଥିଲେ। ସମାଜର ଦୁଇଟି ଅଂଗ ସ୍ତ୍ରୀ ଓ ପୁରୁଷ କିନ୍ତୁ ସ୍ତ୍ରୀ ଜାତି ସମାଜରେ ସଂପୂର୍ଣ୍ଣ ଅବହେଳିତ। ସେମାନଙ୍କୁ ଅଜ୍ଞାନ ଅନ୍ଧକାର ମଧ୍ୟରେ ଆବଦ୍ଧ କରି ଆଧୁନିକତା ଆଲୋକର ଦୂରରେ ରଖାଯାଉଥିଲା। ରାଜା ବାସୁଦେବ ନାରୀମାନଙ୍କୁ ଆଧୁନିକ ସ୍ରୋତରେ ସାମିଲ କରିବା ପାଇଁ ନାରୀଶିକ୍ଷା ପ୍ରଚଳନ କଲେ।

ଏକ ଅନ୍ଧବିଶ୍ୱାସୀ ତଥା କୁସଂସ୍କାର ପୂର୍ଣ୍ଣ ସମାଜରେ ସେମାନଙ୍କ ଶିକ୍ଷା ବ୍ୟବସ୍ଥା କରିବା ରାଜାଙ୍କ ଏକ ବଳିଷ୍ଠ ପଦକ୍ଷେପ। ଦ୍ୱିତୀୟତଃ, ତା.୧୦.୭.୧୯୦୩ରେ ବାଲ୍ୟ ବିବାହ ନିଷେଧ ପାଇଁ ଏକ ବିଜ୍ଞାପନ ଜାରି କରାଗଲା। ବିଜ୍ଞାପନର ଶେଷ ଅଂଶ ନିମ୍ନରେ ପ୍ରଦତ୍ତ ହେଲା।

"ଆମ୍ଭଦ୍ୱାରା ଅନୁମୋଦିତ ହୋଇ ପ୍ରଚାର କରାଗଲା ଯେ କନ୍ୟାର ବୟସ ୧୨ ବର୍ଷରୁ କମ୍‌ରେ କେହି ବିବାହ କରିବ ନାହିଁ। ଯେ କରିବ, ସେ ସମାଜରୁ ଅନ୍ତର ହେବ।"

ଏହି ବିବାହ ନିୟମକୁ ବ୍ରାହ୍ମଣ ପ୍ରଭୃତି ସକଳ ଶ୍ରେଣୀର ଲୋକମାନେ ମଧ୍ୟ ସ୍ୱୀକାର କରିବା ଉଚିତ୍। ଯେହେତୁ କନ୍ୟାର ୧୨ ବର୍ଷରୁ ନ୍ୟୁନ ବୟସରେ ଓ ବରର ୧୪/୧୫ ବର୍ଷ ନ୍ୟୁନ ବୟସରେ ବାଳରିଷ୍ଟ ଦ୍ୱାରା ବିପଦର ଆଶଙ୍କା ଥାଏ।

ରାଜା ବାସୁଦେବଙ୍କ ତିରୋଧାନର ଚାରିମାସ ପୂର୍ବରୁ ରାଜ୍ୟରେ ଏହି ବିଜ୍ଞାପନ ଘୋଷଣା କରାଯାଇଥିଲା। ସେ ଯୁବତୀ ବିବାହର ମଧ୍ୟ ଭିତ୍ତି ସ୍ଥାପନ କଲେ।

ତୃତୀୟ ପଦକ୍ଷେପ ସ୍ୱରୂପ, ବହୁଦିନରୁ ପ୍ରଚଳିତ ଯୌତୁକ ପ୍ରଥାକୁ ବିରୋଧ କରି ଏହାର ନିରାକରଣ ପାଇଁ ବିଧି ବ୍ୟବସ୍ଥା କଲେ। ଫଳରେ, କନ୍ୟାପିତା ବହୁଖର୍ଚ୍ଚାନ୍ତରୁ ରକ୍ଷା ପାଇ ଆଶ୍ୱସ୍ତି ଲାଭ କଲେ।

ଏହିପରି ବହୁ ସମାଜ ସଂସ୍କାର କାର୍ଯ୍ୟକରି ସାର୍ ବାସୁଦେବ ବାମଣ୍ଡାରବାସୀଙ୍କ ଶ୍ରଦ୍ଧାଭାଜନ ହୋଇ ପାରିଥିଲେ।

ରାଜା ବାସୁଦେବଙ୍କ ଦେବାଳୟ ନିର୍ମାଣ ଓ ସଂସ୍କାର - ଜନସାଧାରଣଙ୍କୁ ଧର୍ମପ୍ରତି ଆକୃଷ୍ଟ କରିବା ଲକ୍ଷ୍ୟରେ ରାଜା ବାସୁଦେବ ରାଜ୍ୟର ବିଭିନ୍ନ ସ୍ଥାନରେ ମନ୍ଦିରମାନ ନିର୍ମାଣ କରିଥିଲେ। ପୂର୍ବତନ ରାଜଧାନୀ ପୁରୁଣାଗଡରେ ରାଜା ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର ନିର୍ମାଣ କାର୍ଯ୍ୟ ରାଜା ବାସୁଦେବ ସମାପ୍ତ କରିଥିଲେ। ଏତଦ୍‌ଭିନ୍ନ, ରାଜଧାନୀର ଶାସନ ସାହିସ୍ଥିତ ଗୋକର୍ଣ୍ଣେଶ୍ୱର ମହାଦେବ ମନ୍ଦିର ନିର୍ମାଣ ଓ ମୂର୍ତ୍ତି ସ୍ଥାପନ ଏବଂ ବାସୁଦେବଙ୍କ ପିତା ହରିହର ଦେବ ନିଜ ଖର୍ଚ୍ଚରେ ଆରମ୍ଭ କରିଥିବା ଝାଡେଶ୍ୱର ମହାଦେବଙ୍କ ମନ୍ଦିର ତଥା କୁଚିଣ୍ଡା ସବ୍‌ଡିଭିଜନସ୍ଥ ଜମନକିରା ନିକଟରେ ବାବା ମୁକ୍ତେଶ୍ୱର ମନ୍ଦିରକୁ

ବାସୁଦେବ ସୁଢ଼ଳଦେବ ସମ୍ପୂର୍ଣ୍ଣ କରିଥିଲେ। ରାଜା ବାସୁଦେବ ସୁଢ଼ଳଦେବ ମନ୍ଦିର ଗୁଡ଼ିକର ସୁପରିଚାଳନା ପାଇଁ ଜମିବାଡିର ବନ୍ଦୋବସ୍ତ କରାଇବା ସହ ସେବାୟତ ଓ ପୂଜକ ନିଯୁକ୍ତି କରାଇଥିଲେ।

ଜୀବନକାଳ ମଧ୍ୟରେ ଅତ୍ୟଧିକ ପରିଶ୍ରମ ହେତୁ ସାର୍ ବାସୁଦେବ ସୁଢ଼ଳଦେବ ବାତ ରୋଗରେ ଆକ୍ରାନ୍ତ ହୋଇ ବହୁକଷ୍ଟ ପାଇଲେ। ଏହି ରୋଗର ଉପଶମ ପାଇଁ ସେ କଟକର ବିଶିଷ୍ଟ ଡ଼ାକ୍ତର, ପରେ ରାୟପୁରର ଡ଼ାକ୍ତର ରାଧିକାପ୍ରସାଦ ସିଂହଙ୍କ ଦ୍ୱାରା ଚିକିତ୍ସିତ ହେବା ପରେ କିୟତ ପରିମାଣରେ ଆରୋଗ୍ୟ ହେଲେ। ଏହାପରେ ସେ ବହୁମୂତ୍ର ରୋଗରେ ଆକ୍ରାନ୍ତ ହେଲେ। ବହୁମୂତ୍ରର ଚିକିତ୍ସା ପାଇଁ ୧୯୦୨ ଡ଼ିସେମ୍ବର ୧୭ ତାରିଖରେ କଲିକତା ଯାତ୍ରା କଲେ। ସେଠାରେ ବାତ ରୋଗ ପୂର୍ବାପେକ୍ଷା ଆରୋଗ୍ୟ ଜଣାଗଲେ ସୁଦ୍ଧା ବହୁମୂତ୍ର ରୋଗର ଚିକିତ୍ସାରେ ସେପରି କିଛି ସୁଫଳ ନ ମିଳିବାରୁ ଦେବଗଡ଼କୁ ଫେରି ଆସିଲେ।

ସାର୍ ବାସୁଦେବ ସୁଢ଼ଳଦେବ ପ୍ରଥମ 'ଉତ୍କଳ ସମ୍ମିଳନୀ'ରେ ସଭାପତିତ୍ୱ କରିବା ପାଇଁ ତାଙ୍କ ତିରୋଧାନର ଅବ୍ୟବହିତ ପୂର୍ବରୁ ନିମନ୍ତ୍ରଣ ପାଇଥିଲେ, କିନ୍ତୁ ସେ ସମ୍ମିଳନୀରେ ଯୋଗ ଦେଇ ପାରିଲେ ନାହିଁ। ରାଜାଙ୍କ ତିରୋଧାନ ହୋଇଥିଲା ୧୯୦୩ ମସିହା ନଭେମ୍ବର ୧୯ ତାରିଖରେ। ତାଙ୍କ ତିରୋଧାନରେ ଉତ୍କଳ ଗଗନର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କର ଅସ୍ତମିତ ହେଲା। ସାର୍ ବାସୁଦେବଙ୍କ ତିରୋଧାନରେ ଭକ୍ତକବି ମଧୁସୂଦନ ଲେଖିଥିଲେ -

*ଉତ୍କଳ ଗଗନରବି ଦେବଶ୍ରୀ ସୁଢ଼ଳ*
*ଅସ୍ତମିତ ଦିବା ଦ୍ୱିପହରରେ*
*ଘୋର ଅନ୍ଧକାରେ ମଗ୍ନ କାତର ଉତ୍କଳ,*
*ବିକଳେ କାନ୍ଦଇ ଆର୍ତ୍ତସ୍ୱରେ।*

## ସଚ୍ଚିଦାନନ୍ଦ ଦେବ

ଅଷ୍ଟବିଂଶତି ରାଜା ସଚ୍ଚିଦାନନ୍ଦ ପିତାଙ୍କ ମହାପ୍ରୟାଣ ପରେ ବାମଣ୍ଡା ରାଜ ସିଂହାସନରେ ଅଧିରୂଢ଼ ହେଲେ ୧୯୦୩ ସାଲ ନଭେମ୍ବର ୧୯ ତାରିଖରେ। ସେ ପିତାଙ୍କ ଜଣେ ଗୁଣଗ୍ରାହୀ ଦାୟାଦ। ରାଜା ସୁଢ଼ଳଦେବଙ୍କ ଜୀବିତାବସ୍ଥାରେ ଶାସନଠାରୁ

ଆରମ୍ଭ କରି ସାହିତ୍ୟଚର୍ଚ୍ଚା ପର୍ଯ୍ୟନ୍ତ ସେ ପ୍ରତ୍ୟେକ କ୍ଷେତ୍ରରେ ଅଂଶଗ୍ରହଣ କରି କାର୍ଯ୍ୟସମୂହର ସୁସଂପାଦନା କରିବା ଫଳରେ ପିତାଙ୍କ ଦେହାନ୍ତ ପରେ ତାଙ୍କୁ ରାଜକାର୍ଯ୍ୟ ପରିଚାଳନା କରିବାରେ କୌଣସି ସମସ୍ୟାର ସମ୍ମୁଖୀନ ହେବାକୁ ପଡି ନଥିଲା । ରାଜା ଜଣେ ଲୋକପ୍ରିୟ ଶାସକ ରୂପେ ରାଜ୍ୟବାସୀ ତଥା ଇଂରେଜ ସରକାରଙ୍କ ଦ୍ୱାରା ସମ୍ମାନିତ ତଥା ପ୍ରଶଂସିତ ହୋଇଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ବିଜ୍ଞାନାଭିମୁଖୀ । ଏଣୁ ନବନବ ଉନ୍ମିଷିତ ପ୍ରଜ୍ଞାରେ ଉଦ୍‌ଭାସିତ ହୋଇ ଆଗେଇ ଚାଲିଲେ ଏକ ପରେ ଏକ ସୃଷ୍ଟିରେ । ଶାସନଭାର ଗ୍ରହଣ କରିବା ପରେ ପରେ ତାଙ୍କର ଦୃଷ୍ଟି ପଡିଲା ସମାଜର ସର୍ବବର୍ଗୀୟ ବ୍ୟକ୍ତିଙ୍କ ଶିକ୍ଷା ଉପରେ । ସେ ଅନୁଭବ କଲେ ଯେ ଶିକ୍ଷା ବିନା ରାଜ୍ୟର ସମୁନ୍ନତି ଅସମ୍ଭବ । ଅବହେଳିତ ଅନୁନ୍ନତ ବର୍ଗପାଇଁ ସେ ଏକ ଅନାର୍ଯ୍ୟ ବିଦ୍ୟାଳୟ ସ୍ଥାପନ କଲେ ୧୯୦୪ ମସିହା ଅପ୍ରେଲ ମାସରେ । ସମାଜରେ ଛୁଆଁ ଅଛୁଆଁ ମନୋଭାବ ଉତ୍କଟରୂପ ଧାରଣ କରିଥିଲା । ସବର୍ଣ୍ଣ ଲୋକେ ଅସବର୍ଣ୍ଣ ଲୋକଙ୍କୁ ଛୁଇଁଲେ, ଏପରିକି ସେମାନଙ୍କ ଛାଇ ମାଡ଼ିଲେ ଅପବିତ୍ର ମନେକରି ସ୍ନାନ କରୁଥିଲେ । ଏପରି ଏକ ସାମାଜିକ ସ୍ଥିତିରେ ସେମାନଙ୍କ ଶିକ୍ଷା ପାଇଁ ଶିକ୍ଷକ ମିଳିବା କଷ୍ଟକର ବ୍ୟାପାର ଥିଲା । କିନ୍ତୁ ସମାଜର ଘୋର ବିରୋଧ ସତ୍ତ୍ୱେ ସେମାନଙ୍କୁ ଶିକ୍ଷା ଦେବାପାଇଁ ଆଗେଇ ଆସିଥିଲେ ନୈଷ୍ଠିକ ବ୍ରାହ୍ମଣ ବିଶ୍ୱନାଥ ଶତପଥି । ଶିକ୍ଷାର ପ୍ରସାରଣ ଦିଗରେ ରାଜା ସଚ୍ଚିଦାନନ୍ଦଙ୍କ ଦ୍ୱିତୀୟ ପଦକ୍ଷେପ ହେଲା ବାଳିକା ବିଦ୍ୟାଳୟ ପ୍ରତିଷ୍ଠା । ଏହାଥିଲା ତାଙ୍କ ଯୁଗାନ୍ତକାରୀ ପଦକ୍ଷେପ । ରାଜାଙ୍କ ସ୍ନେହାଶୀଳା କନ୍ୟା ରାଜଜେମା ମନ୍ଦାକିନୀଙ୍କ ତା.୩୧.୧୦.୧୯୧୦ ଦିନ ଅକାଳ ମୃତ୍ୟୁ ହୋଇଥିଲା । କନ୍ୟାଙ୍କ ସ୍ମୃତି ରକ୍ଷା ପାଇଁ ତାଙ୍କ ନାମାନୁସାରେ ବିଦ୍ୟାଳୟର ନାମକରଣ ହେଲା ମନ୍ଦାକିନୀ ବାଳିକା ବିଦ୍ୟାଳୟ । ବିଦ୍ୟାଳୟର ଏକ ପକ୍କା ଗୃହ ନିର୍ମାଣ ପାଇଁ ରାଜା ଦୁଇ ହଜାର ଟଙ୍କା ଦାନ କରିଥିଲେ । ବାଳିକା ମାନଙ୍କୁ ଶିକ୍ଷା ଦିଗରେ ଉତ୍ସାହିତ କରିବା ପାଇଁ ବୃତ୍ତିର ବ୍ୟବସ୍ଥା ମଧ୍ୟ କରିଥିଲେ । ଏତଦ୍‌ବ୍ୟତୀତ, ୧୯୧୦ ସାଲରେ ରାଜଧାନୀ ଦେବଗଡ଼ରେ ଓଡ଼ିଆ ଭାଷାର ଉନ୍ନତି ପାଇଁ ଏକ 'ପ୍ରାଜ୍ଞ' ସ୍କୁଲ ପ୍ରତିଷ୍ଠା କରିଥିଲେ । ଏହି ବିଦ୍ୟାଳୟ ସ୍ଥାପନର ଉଦ୍ଦେଶ୍ୟ ଥିଲା ପିଲାମାନେ ଇଂରାଜୀ ଭାଷା ପରିବର୍ତ୍ତେ ଓଡ଼ିଆ ଭାଷା ପଢ଼ିବାପାଇଁ ଆକୃଷ୍ଟ ହେବେ ଏବଂ ଏତଦ୍ୱାରା ଓଡ଼ିଆ ମାତୃଭାଷାର ଉନ୍ନତି ସାଧିତ ହେବ । ଏହି ବିଦ୍ୟାଳୟ ସ୍ଥାପନ ତତ୍‌କାଳୀନ ଭାଷା ଆନ୍ଦୋଳନକୁ ବିଶେଷ ସହାୟକ

ହୋଇଥିଲା । ୧୯୦୬ ସାଲରେ ରାଜା ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ ଘୋଷଣା କରିବା ସଙ୍ଗେ ସଙ୍ଗେ ପଚାଶଟି ପରିବାର ଥିବା ଗ୍ରାମରେ ଗୋଟିଏ ଲେଖାଏଁ ପ୍ରାଥମିକ ବିଦ୍ୟାଳୟ ଖୋଲିବା ବ୍ୟବସ୍ଥା କରିଥବଲେ । ଅଭିଭାବକ ଗଣ ପିଲାଙ୍କୁ ସ୍କୁଲ ନ ପଠାଇଲେ ଆଇନ ଅଦାଲତରେ ସେମାନେ ଦଣ୍ଡିତ ହେଉଥିଲେ । ଶିକ୍ଷାପ୍ରେମୀ ରାଜା ଇସ୍‌ଲାମିଆ କଲେଜ ଢାଞ୍ଚାରେ ୧୮୮୨ ସାଲ୍‌ରେ ସ୍ଥାପିତ ଉଚ୍ଚଇଂରାଜୀ ବିଦ୍ୟାଳୟର ସ୍ଥାୟୀ ଘର ନିର୍ମାଣ କରିଥିଲେ ।

ରାଜା ପିତାଙ୍କ ପଥ ଅନୁସରଣ କରି ରାଜ୍ୟର ବିକାଶ ପାଇଁ କେତେକ ନୂତନ ପଦକ୍ଷେପ ନେଇଥିଲେ । ସେ ଗୁଡ଼ିକ ମଧ୍ୟରେ ରାଜଧାନୀ ଦେବଗଡ଼ରେ ବିଦ୍ୟୁତ ଆଲୋକ ଯୋଗାଣର ବ୍ୟବସ୍ଥା, ଚିନାମାଟି ବାସନ ପ୍ରସ୍ତୁତି କାରଖାନା ପ୍ରତିଷ୍ଠା, ରଙ୍ଗେଇରେ ପାଟ ଲୁଗା ବୟନ ଶିଳ୍ପ, ଚିନିକଳ ସ୍ଥାପନ, ହିତୈଷିଣୀ ଛାପାଖାନରେ ବିଦ୍ୟୁତ ସଂଯୋଗୀକରଣ, ରାଜଧାନୀରେ ସୁଢ଼ଳ ପୁସ୍ତକାଳୟ ଉନ୍ମୋଚନ ଇତ୍ୟାଦି । ବାରକୋଟ ପ୍ରଗଣାରେ କୃଷି କ୍ଷେତ୍ରରେ ଜଳସେଚନ ପାଇଁ ଦୀର୍ଘ ତିରିଶ କିଲୋମିଟର କେନାଲ ଖନନ, ଉଠା ଜଳସେଚନ ବ୍ୟବସ୍ଥା ଆଦି କାର୍ଯ୍ୟକରି ରାଜା ବାମଣ୍ଡାକୁ ଏକ ଆଦର୍ଶ ରାଜ୍ୟରେ ପରିଣତ କରିବା ପାଇଁ ଉଦ୍ୟମ କରିଥିଲେ ।

ରାଜା ସଚ୍ଚିଦାନନ୍ଦ ତାଙ୍କ ରାଜତ୍ୱ କାଳରେ ପ୍ରଧାନପାଟ ଠାରେ ବସନ୍ତ ନିବାସ ଓ ଲଳିତ ନିବାସ ନାମକ ଦୁଇଟି ଶୈଳନିବାସ ନିର୍ମାଣ କରିଥିଲେ ।

ସଚ୍ଚିଦାନନ୍ଦ ବାଲ୍ୟକାଳରୁ ସାହିତ୍ୟାନୁରାଗୀ ଥିଲେ । ସେ ପିତାଙ୍କ ପରି ଓଡ଼ିଆ ଭାଷା ଓ ସାହିତ୍ୟର ସମୃଦ୍ଧି ପାଇଁ କରିଥିବା ଉଦ୍ୟମ ଅତୀବ ପ୍ରଶଂସନୀୟ । ତାଙ୍କ ସାହିତ୍ୟକୃତିକୁ ଲକ୍ଷ୍ୟ କରି ବଙ୍ଗଳା କବି ନଗେନ୍ଦ୍ରବାଳା ଲେଖିଥିଲେ -

*"ଉତ୍କଳ ପ୍ରଦେଶେ ତୁମି ଉଜ୍ଜ୍ୱଳ ତପନ,*
*ଶସ୍ତ୍ର-ଶାସ୍ତ୍ର ବିଶାରଦ ପଣ୍ଡିତ ସୁଜନ ।"*

ପ୍ରଖ୍ୟାତ କବି ସଚ୍ଚିଦାନନ୍ଦଙ୍କ ସୃଷ୍ଟି ସମ୍ଭାରରେ ପ୍ରାଚୀନତା ତଥା ଆଧୁନିକତାର ସମ୍ମିଶ୍ରଣ ପରିଦୃଷ୍ଟ ହୁଏ । କିନ୍ତୁ କବିଙ୍କ ରଚନାବଳୀର ଦୃଷ୍ଟିଭଙ୍ଗୀ ବିଜ୍ଞାନ ଉପରେ ଆଧାରିତ ହେବା ସହ କୁସଂସ୍କାର ବଳୟର ବହୁ ଉର୍ଦ୍ଧ୍ୱରେ ଥିଲା । ସେ ଯୁଗଧର୍ମ ପ୍ରତି ସତତ ସଚେତନ ଥିଲେ । ରାଜା ପ୍ରଖ୍ୟାତ କବି ଓ ପଣ୍ଡିତ ମାନଙ୍କୁ ନିମନ୍ତ୍ରଣ କରି

ସଭାରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରାଉଥିଲେ। ରାଜା ସଚ୍ଚିଦାନନ୍ଦଙ୍କ ରାଜତ୍ୱ କାଳରେ ଏକ ସାରସ୍ୱତ ସମାରୋହରେ ବ୍ୟାସକବି ଫକୀରମୋହନଙ୍କୁ 'ସରସ୍ୱତୀ' ଉପାଧି ପ୍ରଦାନ କରାଯାଇଥିଲା।

ଏହି ସାରସ୍ୱତ ସାଧକ ରାଜକବି ସଚ୍ଚିଦାନନ୍ଦଙ୍କ କର୍ମମୟ ଜୀବନର ଅବସାନ ଘଟିଥିଲା ୧୯୧୬ ସାଲ ମାର୍ଚ୍ଚ ୧୧ ତାରିଖରେ।

## ରାଜା ଦିବ୍ୟଶଙ୍କର ସୁଢ଼ଳଦେବ

ରାଜା ସଚ୍ଚିଦାନନ୍ଦଙ୍କ ତିରୋଧାନ ପରେ ତାଙ୍କର ସୁପୁତ୍ର ଦିବ୍ୟଶଙ୍କର ବାମଣ୍ଡାର ଊନତ୍ରିଂଶ ନରପତି ରୂପେ ସିଂହାସନ ଆରୋହଣ କଲେ। ତାଙ୍କର ରାଜତ୍ୱ କାଳ ମାତ୍ର ଚାରିବର୍ଷ। ରାଜା ଏହି ସ୍ୱଳ୍ପ ଶାସନକାଳ ମଧ୍ୟରେ ସମର ଜ୍ୱର ଓ ଦୁର୍ଭିକ୍ଷରୁ ପ୍ରଜାମାନଙ୍କୁ ରକ୍ଷା କରିବା ପାଇଁ ସୁଦୃଢ଼ ପଦକ୍ଷେପ ନେଇ ଚିର ସ୍ମରଣୀୟ ହୋଇ ରହିଲେ। ଏହା ହେଉଛି ପ୍ରଥମ ବିଶ୍ୱଯୁଦ୍ଧର ଠିକ୍ ପରବର୍ତ୍ତୀ ସମୟ। ଯୁଦ୍ଧରେ ବ୍ୟବହୃତ ରାସାୟନିକ ଦ୍ରବ୍ୟର ବିଷାକ୍ତ ବାଷ୍ପ ବାୟୁମଣ୍ଡଳକୁ ପ୍ରଭାବିତ କଲା, ଯାହା ଫଳରେ ହଜାର ହଜାର ଲୋକ ଇନ୍‌ଫ୍ଲୁଏଞ୍ଜା ଜ୍ୱରରେ ଆକ୍ରାନ୍ତ ହେଲେ। ବିଶ୍ୱଯୁଦ୍ଧର କୁପ୍ରଭାବ ହେତୁ ଏହି ଜ୍ୱର ହୋଇଥିବାରୁ ଏହାକୁ 'ସମର ଜ୍ୱର' ଆଖ୍ୟା ଦିଆଯାଇଥିଲା। ରାଜା ପ୍ରଜାମାନଙ୍କୁ ଆରୋଗ୍ୟ କରିବା ପାଇଁ କଲିକତା ମହାନଗରୀରୁ ଡାକ୍ତର ଆଣି ଚିକିତ୍ସାର ବ୍ୟବସ୍ଥା କରିଥିଲେ। ଫଳରେ, ପ୍ରଜାକୁଳ ଅକାଳ ମୃତ୍ୟୁ ମୁଖରୁ ରକ୍ଷା ପାଇଥିଲେ। ସମର ଜ୍ୱର ପରେ ପରେ ରାଜ୍ୟରେ କରାଳ ଦୁର୍ଭିକ୍ଷ ଦେଖାଗଲା। ପ୍ରଜାଙ୍କ ଜୀବନ ରକ୍ଷା ପାଇଁ ରାଜା ବିଭିନ୍ନ ଉନ୍ନୟନ କାର୍ଯ୍ୟ ଆରମ୍ଭ କରି ପ୍ରଜାଙ୍କୁ କାର୍ଯ୍ୟରେ ନିଯୁକ୍ତି କଲେ। ବ୍ରହ୍ମଦେଶର ରେଙ୍ଗୁନ୍‌ରୁ ଟଙ୍କାକୁ ଛଅସେର ଚାଉଳ କିଣି ଆଣି ଆଠସେର ଦରରେ ପ୍ରଜାଙ୍କୁ ଯୋଗାଇଲେ। ରାଜା ଦିବ୍ୟଶଙ୍କରଙ୍କ ତିରୋଧାନରେ ଦୁଃଖ ପ୍ରକାଶ କରି କବୟିତ୍ରୀ ଶ୍ରୀମତୀ ଆଶାକୁମାରୀ ଦେବୀ ଲେଖିଛନ୍ତି -

*"କୋଇଲି ଲୋ, ଛଟକେ ପ୍ରଜାଙ୍କ ଦୁଃଖ ଦୂର*
*ଛ' ସେର ଚାଉଳ ଆଣି ଦେଲେ ଆଠ ସେର, ଲୋ କୋଇଲି।୭।*
*କୋଇଲି ଲୋ, ଜୀବ ଦେଲେ କିଣିଣ ମଡକ*
*ଯଶୋ ଘୋଷୁଥିବେ ଯାବତ୍ ଥିବେ ଚନ୍ଦ୍ରଅର୍କ, ଲୋ କୋଇଲି।୮।"*

*(ଦିବ୍ୟଶଙ୍କର କୋଇଲି)*

ପ୍ରଥମ ବିଶ୍ୱଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ କରିଥିବାରୁ ସରକାର ରାଜାଙ୍କୁ ସି.ବି.ଇ. ଉପାଧି ଦେଇଥିଲେ।

ଏତଦ୍‌ଭିନ୍ନ, ରାଜା ତାଙ୍କର ରାଜତ୍ୱ କାଳ ମଧ୍ୟରେ ୧୯୨୦ ସାଲରେ ପିତାଙ୍କ ସ୍ମୃତି ରକ୍ଷା ପାଇଁ ରାଜଧାନୀ ଦେବଗଡ଼ରେ "ସଚ୍ଚିଦାନନ୍ଦ ପାଠାଗାର" ସ୍ଥାପନ କରି ଦେଶ ବିଦେଶରୁ ବହୁ ପ୍ରସିଦ୍ଧ ଲେଖକ ଲେଖିକାଙ୍କ ପୁସ୍ତକ ଆଣି ପାଠାଗାରକୁ ଯୋଗାଇ ଥିଲେ। ବହୁ ପାଠକ ଓ  ଗବେଷକ ଏହି ପାଠାଗାରରୁ ଦୁର୍ଲଭ ପୁସ୍ତକ ପାଠକରି ବିଭିନ୍ନ ତଥ୍ୟ ଉପରେ ସେମାନଙ୍କ ଗବେଷଣାକୁ ମହାର୍ଘ କରିବାରେ ସଫଳୀକୃତ ହୋଇଥିଲେ। ରାଜା କଳାପ୍ରିୟ ହେତୁ ଆଧୁନିକ ଧରଣର ରଙ୍ଗମଞ୍ଚ ନିର୍ମାଣ କରିଥିଲେ ଏବଂ ରଙ୍ଗମଞ୍ଚର ନାମ ଦେଇଥିଲେ 'ଗାଙ୍ଗେୟ ରଙ୍ଗମଞ୍ଚ' ବଙ୍ଗଳାର ବିଶେଷ କଳାକାର ଧୀରେନ୍ ଗାଙ୍ଗୁଲିଙ୍କୁ ଆଣି ପୌରାଣିକ ତଥା ଆଧୁନିକ ନାଟକ ଅଭିନୀତ କରାଇଥିଲେ।

କୈଳାସ ପର୍ବତର ପାଦଦେଶରେ ଏକ ମନୋରମ ଶୈଳନିବାସ ନିର୍ମାଣ କରି ଉଚ୍ଚପଦସ୍ଥ ଇଂରେଜ ଶାସକଙ୍କ ଗସ୍ତ ବେଳେ ସେମାନଙ୍କୁ ସେଠାରେ ରହିବା ବନ୍ଦୋବସ୍ତ କରୁଥିଲେ।

ରାଜାଙ୍କ ତିରୋଧାନ ହୋଇଥିଲା ୧୯୨୦ ସାଲ୍‌ରେ ଇନ୍‌ଫ୍ଲୁଏଞ୍ଜା ରୋଗରେ।

## ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ

ରାଜା ଦିବ୍ୟଶଙ୍କରଙ୍କ ଜ୍ୟେଷ୍ଠପୁତ୍ର ଭାନୁଗଙ୍ଗ ତ୍ରିଭୁବନ ଦେବ ଆଖ୍ୟା ଗ୍ରହଣ କରି ବାମଣ୍ଡା ରାଜସିଂହାସନ ଆରୋହଣ କରିଥିଲେ ୧୯୩୫ ସାଲ୍ ଜାନୁଆରୀ ମାସରେ। ସେ ପୂର୍ବପୁରୁଷଙ୍କ ପ୍ରତିଷ୍ଠିତ ବିଭିନ୍ନ ସଂସ୍ଥା ଗୁଡିକର ପୃଷ୍ଠପୋଷକତା କରିବା ସହ କେତେକ ନୂତନ ଉନ୍ନୟନ କାର୍ଯ୍ୟ ସମ୍ପାଦନ କରିଥିଲେ। ସେଗୁଡ଼ିକ ମଧ୍ୟରେ କୁଚିଣ୍ଡାରେ ମିର୍ଜା ଇଣ୍ଡଷ୍ଟ୍ରିଆଲ୍ ସ୍କୁଲ, ଦେବଗଡରେ କୁଷ୍ଠାଶ୍ରମ, ବୟନଶିଳ୍ପ କାରଖାନା, ଗୋଶାଳା, ମାର୍କେଟଗୃହ ଆଦି। ତାଙ୍କ ସମୟରେ ବାମଣ୍ଡାର ନାଟ୍ୟକଳା ଓଡ଼ିଶାରେ ଶୀର୍ଷସ୍ଥାନ ଲାଭ କରିଥିଲା।

ମାତ୍ର ୧୨ ବର୍ଷ ରାଜତ୍ୱ କରି ରାଜା ୧୯୪୮ ଜାନୁଆରୀ ୧ ତାରିଖରେ ରାଜ୍ୟର ଶାସନ ଭାର ଓଡ଼ିଶା ସରକାରଙ୍କୁ ହସ୍ତାନ୍ତର କରିବାକୁ ବାଧ୍ୟ ହୋଇଥିଲେ।

ବାମଣ୍ଡା ଗଡ଼ଜାତ ସେହିଦିନଠାରୁ ଓଡ଼ିଶାର ଶାସନାଧୀନ ହୋଇ ରହିଲା ଏବଂ ଓଡ଼ିଶାର ଆଇନକାନୁନ ଅନୁଯାୟୀ ଶାସନ କାର୍ଯ୍ୟ ପରିଚାଳିତ ହେଲା ।

## ପଡ଼ୋଶୀ ରାଜ୍ୟ ସହ ସଂପର୍କ / ବୈବାହିକ ସଂପର୍କ

ବାମଣ୍ଡାର ସମ୍ବଲପୁର ତଥା ପଡ଼ୋଶୀ ରାଜ୍ୟ ଗାଙ୍ଗପୁର, ବଣେଇ, ରେଢ଼ାଖୋଲ, ତାଳଚେର, ଅନୁଗୁଳ ସହ ବନ୍ଧୁତା ତଥା ସୁସଂପର୍କ ଥିବା ସତ୍ତ୍ୱେ ସେମାନଙ୍କ ମଧ୍ୟରେ ସମୟ ସମୟରେ ମନାନ୍ତର, ମତାନ୍ତର ଓ ଯୁଦ୍ଧ ବି ହେଉଥିଲା । ଚୌହାନ ବଂଶର ସମ୍ବଲପୁର ରାଜା ବଳଭଦ୍ର ସାଏ ଗାଙ୍ଗପୁର, ବାମଣ୍ଡା, ବଣେଇ ରାଜ୍ୟର ରାଜକନ୍ୟାମାନଙ୍କୁ ବିବାହ କରିଥିଲେ । ସେହିପରି ମଧୁକର ସାଏ ଗାଙ୍ଗପୁର, ବାମଣ୍ଡା, ବୌଦ, ମୟୁରଭଞ୍ଜ ରାଜ୍ୟର ରାଜଦୁହିତାଙ୍କ ପାଣିଗ୍ରହଣ କରିଥିଲେ । ରାଜା ବଳିଆର ସିଂଙ୍କର ଯଥାକ୍ରମେ ଗାଙ୍ଗପୁର, ବୌଦ, ବାମଣ୍ଡା, ବଣେଇ ରାଜଜେମା ରାଣୀ ଥିଲେ । ରାଜା ଛତ୍ର ସାଏ ବାମଣ୍ଡା ରାଜକନ୍ୟାଙ୍କୁ ବିବାହ କରିଥିଲେ । ବଡ଼ ନାଗପୁର ମରହଟ୍ଟା ରାଜା ରଘୁଜୀ ଭୋନ୍‌ସଲାଙ୍କ ଦ୍ୱାରା ଯୁଦ୍ଧରେ ପରାଜିତ ହୋଇ ମହାରାଜା ସାଏ ବନ୍ଦୀ ହେବାରୁ ରାଣୀ (ବାମଣ୍ଡା ଜେମା) ନିଜ ପୁଅକୁ ବାମଣ୍ଡାକୁ ପଠାଇ ନିଜେ ରାଜ୍ୟ ଶାସନ କଲେ । ମହାରାଜା ସାଏଙ୍କ ସ୍ୱାସ୍ଥ୍ୟଭଙ୍ଗ ହେତୁ ଭାସ୍କର ପଣ୍ଡିତ ତାଙ୍କୁ ଜେଲରୁ ମୁକ୍ତ କରିଥିଲେ ଏବଂ ରାଜାଙ୍କ ଦେହାନ୍ତ ହେବାରୁ ତାଙ୍କ ପୁତ୍ର ଅଜିତ ସିଂଙ୍କୁ ବାମଣ୍ଡାରୁ ସମ୍ବଲପୁର ଆଣି ରାଜ ସିଂହାସନରେ ଅଭିଷିକ୍ତ କଲେ । ଅଜିତ ସିଂ ଗାଙ୍ଗପୁର, ବାମଣ୍ଡା, ବୌଦ ରାଜ୍ୟର ରାଜକନ୍ୟାଙ୍କ ପାଣିଗ୍ରହଣ କରିଥିଲେ ।

ସମ୍ବଲପୁର ଚୌହାନ ରାଜବଂଶର ରାଜାମାନଙ୍କ ସହ ବାମଣ୍ଡା ରାଜବଂଶର ରାଜାମାନଙ୍କ ବୈବାହିକ ସମ୍ପର୍କ ଥିଲା । ସମ୍ବଲପୁର ରାଜା ବଳଭଦ୍ର ସାଏ (୧୬୦୨ - ୧୬୩୨), ମଧୁକର ସାଏ (୧୬୩୨ - ୧୬୫୮), ଛତ୍ର ସାଏ (୧୬୯୯ - ୧୭୪୨), ଅଜିତ ସିଂ (୧୭୪୨ - ୧୭୬୬) ବାମଣ୍ଡା ରାଜବଂଶର କନ୍ୟାମାନଙ୍କ ପାଣିଗ୍ରହଣ କରିଥିବା ବେଳେ ବାମଣ୍ଡା ରାଜା ବ୍ରଜସୁନ୍ଦର ଦେବ ସମ୍ବଲପୁର ମହାରାଜା ସାଏଙ୍କ ଦ୍ୱିତୀୟା କନ୍ୟା ଶ୍ରୀମତୀ କୁମାରୀ ଦେବୀଙ୍କୁ ବିବାହ କରିଥିଲେ ।

ସେହିପରି ପରବର୍ତ୍ତୀ ରାଜା ସାର୍ ବାସୁଦେବ ସୁଢ଼ଳଦେବ କଳାହାଣ୍ଡି ରାଜା ଉଦିତ ପ୍ରତାପ ଦେବଙ୍କ ମଧ୍ୟମା କନ୍ୟା ଗିରିରାଜ କୁମାରୀ ଦେବୀ (୧୮୭୧),

ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ କାଶିପୁର (କଳାହାଣ୍ଡି) ର ଥାଟ ରାଜା ବୈଦ୍ୟନାଥ ସିଂ ଦେବଙ୍କ ଜ୍ୟେଷ୍ଠା କନ୍ୟା ଡ଼ମ୍ବରୁଧର ପ୍ରିୟାଙ୍କୁ (୧୮୮୯), ରାଜା ଦିବ୍ୟ ଶଙ୍କର ସୁଢ଼ଳ ଦେବ ଖଡ଼ିଆଳ ରାଜା ବୀର ବିକ୍ରମ ଦେବଙ୍କ ଜ୍ୟେଷ୍ଠା କନ୍ୟା କନକ ମଞ୍ଜରୀ ଦେବୀଙ୍କୁ (୧୯୧୩) ଓ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ କଳାହାଣ୍ଡି ମହାରାଜା ବ୍ରଜମୋହନ ଦେବଙ୍କ ଦ୍ୱିତୀୟା କନ୍ୟା ଜ୍ୟୋତିମଞ୍ଜରୀ ଦେବୀଙ୍କୁ (୧୯୩୫) ବିବାହ କରିଥିଲେ।

ପଡ଼ୋଶୀ ରାଜ୍ୟର ରାଜାମାନେ ଯଦିଓ ସ୍ୱାଧୀନ ଭାବେ ରାଜ୍ୟ ଚଳାଉଥିଲେ ତଥାପି ସେମାନେ ସମ୍ବଲପୁର ରାଜା ମାନଙ୍କ ନେତୃତ୍ୱ ମାନିନେବାକୁ ବାଧ ହେଉଥିଲେ। ମଝିରେ ମଝିରେ କୌଣସି କାରଣକୁ କେନ୍ଦ୍ର କରି ସେମାନଙ୍କ ମଧ୍ୟରେ ଲଢ଼େଇ ବି ହେଉଥିଲା। ଏସବୁ ସତ୍ତ୍ୱେ ବି ରାଜ୍ୟାଭିଷେକ, ବ୍ରତ, ବିବାହ ଏପରିକି ବାର୍ଷିକ ଉତ୍ସବ, ଦଶହରା ପର୍ବ ବା କୌଣସି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହେଲେ ପରସ୍ପରକୁ ନିମନ୍ତ୍ରଣ କରୁଥିଲେ ଏବଂ ସେମାନଙ୍କୁ ଆଡ଼ମ୍ବରପୂର୍ଣ୍ଣ ଆତିଥ୍ୟ ଦ୍ୱାରା ଆପ୍ୟାୟିତ କରୁଥିଲେ।

### ବାମଣ୍ଡାରେ ରାଜତ୍ୱ କରିଥିବା ରାଜାମାନଙ୍କର ନାମ

୧. ସରଯୂ ଦେବ

୨. ନାରାୟଣ ଦେବ

୩.ଜଗନ୍ନାଥ ଦେବ

୪.ଗଙ୍ଗାଧର ଦେବ

୫. ଜଗଜ୍ୟୋଷ୍ଠି ତ୍ରିଭୁବନଦେବ

୬. ରୁଦ୍ରନାରାୟଣ ଦେବ

୭. କାନଫୋଡା ସୁଢ଼ଳଦେବ

୮.ରଘୁନାଥ ଦେବ

୯. କସ୍ତୁରୀ ଦେବ

୧୦. ରାମଚନ୍ଦ୍ର ଦେବ

୧୧. ଦୁହ୍ଲାର ଦେବ

୧୨. ମୁଖୀ ଦେବ

୧୩. ବିଶ୍ୱନାଥ ଦେବ

୧୪. ସଦାନନ୍ଦ ଦେବ

୧୫. ବିକ୍ରମ ଦେବ

୧୬. ରଘୁନାଥ ଦେବ

୧୭. ବିଭୂତି ଦେବ

୧୮. ଭାଗିରଥୀ ଦେବ

୧୯. ହାଡୁ ଦେବ

୨୦. ଚନ୍ଦ୍ରଶେଖର ଦେବ

୨୧. ପ୍ରତାପରୁଦ୍ର ଦେବ

୨୨. ସର୍ବେଶ୍ୱର ଦେବ

୨୩. ଅର୍ଜୁନ ଦେବ

୨୪. ବାଲୁଙ୍କା ବୃଷଭ ଦେବ — ୧୮୦୪ - ୧୮୨୫

୨୫. ଖଗେଶ୍ୱର ଦେବ — ୧୮୨୫-୧୮୩୧

୨୬. ବ୍ରଜସୁନ୍ଦର ତ୍ରିଭୁବନ ଦେବ — ୧୮୩୧ - ୧୮୬୮

୨୭. ବାସୁଦେବ ସୁଢ଼ଳ ଦେବ — ୧୮୬୮ - ୧୯୦୩

୨୮. ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ — ୧୯୦୩ - ୧୯୧୬

୨୯. ଦିବ୍ୟଶଙ୍କର ସୁଢ଼ଳଦେବ — ୧୯୧୬ - ୧୯୨୦

୩୦. ଭାନୁଗଙ୍ଗ ତ୍ରିଭୁବନଦେବ — ୧୯୩୫ - ୧୯୪୭



# ବାମଣ୍ଡାର ଅର୍ଥନୈତିକ ଓ ସାମାଜିକ ସ୍ଥିତି

## ବାମଣ୍ଡା ରାଜ୍ୟର ଅର୍ଥନୈତିକ ବ୍ୟବସ୍ଥା

ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ ପୂର୍ବରୁ ସୀମାନ୍ତ ରାଜ୍ୟମାନଙ୍କ ସହ ଯୁଦ୍ଧ, ବର୍ହି-ଆକ୍ରମଣ ତଥା ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ସାଏଙ୍କ ସଂଗ୍ରାମର ପ୍ରଭାବ ବାମଣ୍ଡାରେ ପଡ଼ିଥିବାରୁ ରାଜ୍ୟର ଆର୍ଥିକ ଅବସ୍ଥା ଅତି ଦୁର୍ବଳ ହେଇ ପଡ଼ିଥିଲା । ବାମଣ୍ଡାର ରାଜକୋଷ କେବଳ ଆକ୍ରମଣ ତଥା ବିଦ୍ରୋହ ଦମନ ଦିଗରେ ବ୍ୟୟ ହେଇଥିବାରୁ ରାଜାଗଣ ରାଜ୍ୟର ବିକାଶ ଦିଗରେ ଦୃଷ୍ଟି ଦେଇ ପାରୁ ନ ଥିଲେ । ସାର୍ ବାସୁଦେବଙ୍କ ଭୂବନ୍ଦୋବସ୍ତ, ରାଜ୍ୟରେ ଜଳସେଚନର ବ୍ୟବସ୍ଥା ଏବଂ ପ୍ରଜାଙ୍କୁ କୃଷି ସମ୍ବନ୍ଧୀୟ ଶିକ୍ଷା ଦେବା ପାଇଁ ଆଦର୍ଶ କୃଷି ଫାର୍ମ ସ୍ଥାପନ, ବନ୍ୟ ସଂପଦର ସୁବିନିଯୋଗ ଆଦିର ବ୍ୟବସ୍ଥା ଦ୍ୱାରା ରାଜ୍ୟର ଅର୍ଥନୀତିର କ୍ରମବିକାଶ ଘଟିଥିଲା । ରାଜାଙ୍କ ଦେହାନ୍ତ ପରେ ପୁନଶ୍ଚ ୧୯୧୪ର ବିଶ୍ୱ ଯୁଦ୍ଧ, ମହାମାରୀ ଆଦି ଦ୍ୱାରା ବାମଣ୍ଡାର ଆର୍ଥିକ ଅବସ୍ଥା ସଂକଟାପନ୍ନ ହେଲା ।

### କୋର୍ଟ ଅଫ୍ ଓ୍ୱାର୍ଡସ୍

ରାଜା ଦିବ୍ୟଶଙ୍କର ସୁଢ଼ଳଦେବଙ୍କ ଦେହାନ୍ତ ସମୟରେ ଭାନୁଗଙ୍ଗ ନାବାଳକ ଥିବାରୁ ବଡ଼କୁମର ହୃଦୟନାଥ ଦେବ ଦୁଇବର୍ଷ କାଳ ରାଜ୍ୟ ଶାସନ କାର୍ଯ୍ୟ ଚଳାଇଥିଲେ । ୧୯୨୨ ସାଲ ଅଗଷ୍ଟ ମାସରେ ସମ୍ବଲପୁରର ପୂର୍ବତନ ବନ୍ଦୋବସ୍ତ ଅଫିସର ମି.ଏଚ୍. ମେକ୍‌ଫରସନ କୋର୍ଟ ଅଫ୍ ଓ୍ୱାର୍ଡସ୍ ବାମଣ୍ଡା ରାଜ୍ୟର ତତ୍ତ୍ୱାବଧାରକ ରୂପେ ଯୋଗଦାନ କଲେ । ମି. ମେକ୍‌ଫରସନଙ୍କ ଶାସନ କାଳରେ ବାମଣ୍ଡାରେ ଭୂ-ବନ୍ଦୋବସ୍ତ ସବୁଠାରୁ ଉଲ୍ଲେଖନୀୟ କାର୍ଯ୍ୟ । ଭୂବନ୍ଦୋବସ୍ତ ପରେ ସେ ରେଭେନ୍ୟୁ ନିୟମାବଳୀ, ୧୯୨୯ ତିଆରି କରି ତାକୁ ଡିସେମ୍ବର ୧ ତାରିଖରୁ ରାଜ୍ୟରେ କାର୍ଯ୍ୟକାରୀ କଲେ ।

ଏହି ରେଭେନ୍ୟୁ ଆଇନ, ୧୯୨୯ ଅତି କଠୋର ଥିଲା। ଗାଁର ଗୌନ୍ତିଆ ବା ପ୍ରଧାନଙ୍କୁ ରାଜ୍ୟର ଜଣେ ସରକାରୀ କର୍ମଚାରୀ୍ ବୋଲି ନିଯୁକ୍ତି ପତ୍ରରେ ଉଲ୍ଲେଖ କରାଯାଇଥିଲା। ସେ ତାଙ୍କ କାର୍ଯ୍ୟର ପାରିଶ୍ରମିକ ସ୍ୱରୂପ ରାଜ୍ୟ ସରକାର ତାଙ୍କୁ ମାଫି ଚାଷଜମି ଭୋଗ କରିବାକୁ ବ୍ୟବସ୍ଥା କରିଥିଲେ। ଏହି ଜମିକୁ 'ଭୋଗରା' ଜମି ବୋଲି କୁହାଯାଉଥିଲା। ଗଙ୍ଗବଂଶର ରାଜତ୍ୱ କାଳରେ ପ୍ରତିଗ୍ରାମର ଶାସନ ଦାୟିତ୍ୱ ଜଣେ ଭୋଗୀ ବା ନାୟକଙ୍କୁ ଦିଆଯାଉଥିଲା। ଭୋଗୀମାନେ ନିଷ୍କର ଜମିକୁ ଚାଷ କରୁଥିଲେ। ସେହି 'ଭୋଗୀ'ରୁ 'ଭୋଗରା' ଶବ୍ଦର ସୃଷ୍ଟି। ଗୌନ୍ତିଆ ବା ପ୍ରଧାନ କାର୍ଯ୍ୟରୁ ଅନ୍ତର ହେଲେ ଜମି ଉପରେ ତାଙ୍କର ସତ୍ତ୍ୱ ଲୋପ ହେଉଥିଲା। ନିୟମ ଥିଲା ଯେ ଗୌନ୍ତିଆଙ୍କ ମୃତ୍ୟୁ ହେଲେ ବା ଗୌନ୍ତି ସତ୍ତ୍ୱ ତ୍ୟାଗ କଲେ ନୂତନ ଗୌନ୍ତିଆ ନିକଟକୁ ଭୋଗରା ଜମି ହସ୍ତାନ୍ତରିତ ହେବ। ଭୂ ରାଜସ୍ୱ ଅସୁଲି ଉପରେ କମିଶନ ବ୍ୟବସ୍ଥା ଥିଲା। କୌଣସି ପ୍ରଜା ପଳାତକ ହେଲେ ନୂତନ ପ୍ରଜା ବନ୍ଦୋବସ୍ତ ପାଇଁ ଗୌନ୍ତିଆଙ୍କ କ୍ଷମତା ଥିଲା। ପ୍ରଜାଙ୍କ ନିଜର ଜମି ବିକ୍ରି, ଦାନ ବା ବନ୍ଧକ କରିବା ଅଧିକାର ନଥିଲା। କେବଳ ଗୌନ୍ତିଆଙ୍କ ଅନୁମତି କ୍ରମେ ଅନ୍ୟ ବନ୍ଦୋବସ୍ତ ପର୍ଯ୍ୟନ୍ତ ପେଟି ପ୍ରଜା ବସାଇ ପାରୁଥିଲେ। ଏପରିକି, ଅଦାଲତରେ ମଂଜୁରୀ କରିବାବେଳେ ମାଜିଷ୍ଟ୍ରେଟ୍ ଗୌନ୍ତିଆଙ୍କ ସୁପାରିଶ ଉପରେ ପ୍ରାଧାନ୍ୟ ଦେଉଥିଲେ। ପ୍ରଜା ଜମିରୁ ଇସ୍ତଫା ଦେଲେ ଗୌନ୍ତିଆ ଅନ୍ୟ ପ୍ରଜାଙ୍କୁ ନିଯୁକ୍ତି କରୁଥିଲେ ବା ଷ୍ଟେଟ୍‌ର ଅନୁମତି କ୍ରମେ ନିଜେ ଚାଷ କରୁଥିଲେ। ଜମି ଚାଷ ନ ହୋଇ ପଡିଆ ପଡିଲେ ରଏତ୍ ବନ୍ଦୋବସ୍ତ କରିବା ଗୌନ୍ତିଆଙ୍କ ଦାୟିତ୍ୱ ଥିଲା। ଗୌନ୍ତି ଦଖଲ ସତ୍ତ୍ୱ ପୁରୁଷାନୁକ୍ରମେ ବାହେଲ ଥିଲା। ଗୌନ୍ତିଆଙ୍କ ମୃତ୍ୟୁ ହେଲେ ଜ୍ୟେଷ୍ଠପୁତ୍ର ସତ୍ତ୍ୱାଧିକାରୀ ହେବା ଆଇନର ଅନ୍ତର୍ଭୁକ୍ତ ଥିଲା।

ଗୌନ୍ତିଆମାନେ ଅଖଣ୍ଡ କ୍ଷମତାର ଅଧିକାରୀ ବୋଲି ନିଜକୁ ମଣୁଥିଲେ ଓ ମେରୀରାୟ ଶାସନ ଚଳାଉଥିଲେ। କେହି ସେମାନଙ୍କର ବିରୁଦ୍ଧାଚରଣ କଲେ ମନଗଢ଼ା ଅଭିଯୋଗ ମାନ ଆଣି ଜମିରୁ ବେଦଖଲ କରି ଗ୍ରାମରୁ ତଡି ଦେଉଥିଲେ। ଏଣୁ ପ୍ରଜାକୁଳ ଗୌନ୍ତିଆମାନଙ୍କ ଦୟାରେ ଅତି ଦୀନହୀନ ଜୀବନ ଯାପନ କରୁଥିଲେ। ମୋଟ ଉପରେ, ଗୌନ୍ତିଆମାନେ ଗାଁ ମାନଙ୍କର ଜଣେ ଜଣେ ରାଜାଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। ହକିୟତ ଗୌନ୍ତି ପଟ୍ଟାରେ ବ୍ୟବସ୍ଥା ଥିଲା ଯେ କୌଣସି

ଦୋଷୀଙ୍କୁ ଗୌନ୍ତିଆ ଗ୍ରାମରେ ଆଶ୍ରୟ ଦେଇ ପାରିବ ନାହିଁ। ଅପରାଧୀଙ୍କୁ ବିଚାରାଳୟକୁ ଆଣିବା ସକାଶେ ଗୌନ୍ତିଆ ପୋଲିସ୍ କର୍ମଚାରୀଙ୍କୁ ସାହାଯ୍ୟ କରିବ। ପରିବାରର ଶୁଭାଶୁଭ କାମରେ ଧାର୍ଯ୍ୟ ପଞ୍ଝା ଅସୁଲ କରିବ। ରାଜା ଓ ବ୍ରିଟିଶ୍ ସରକାରଙ୍କ କର୍ମଚାରୀଙ୍କୁ ତାଲିକା ଅନୁଯାୟୀ ରସଦ୍ ଯୋଗାଇବା ଓ ସେମାନଙ୍କୁ କାର୍ଯ୍ୟରେ ସାହାଯ୍ୟ କରିବା ଦାୟିତ୍ୱ ଗୌନ୍ତିଆର।

## ପାହ୍ୟା ଅନୁଯାୟୀ ରସଦ୍ ଯୋଗାଇବା ଧାର୍ଯ୍ୟ ପରିମାଣ

ରାଜାଙ୍କ ଏକ ପୁରୁଷ ଅନ୍ତର୍ଗତ ରାଜା ପରିବାରର ସରକାରୀ କାର୍ଯ୍ୟରେ ଥିବା ଏଜେନ୍ସି ଅଫିସର, ଗଭର୍ଣ୍ଣମେଣ୍ଟ ଅଫିସରଙ୍କ ଏକଓଳି ପାଇଁ ରସଦ୍ ଦେଇ ନିମ୍ନମୂଲ୍ୟ ଗୌନ୍ତିଆ ଚାର୍ଯ କରିପାରିବେ। କାଠ ଓ ପାଣି ବିନାମୂଲ୍ୟରେ ଯୋଗାଯିବ।

| | (ଦଶମିକ୍ ମୁଦ୍ରାରେ) |
|---|---|
| ୧. ସରୁ ଅରୁଆ ଚାଉଳ - ଅଧସେର ବା ୫୦୦ ଗ୍ରାମ୍ | ଏକ ଅଣା ବା ଛଅ ପଇସା |
| ୨. ମୁଗଡାଲି ଦୁଇ ଛଟାଙ୍କି ବା ୧୨୫ ଗ୍ରାମ୍ | ଏକ ଅଣା ବା ଛଅ ପଇସା |
| ୩. ଘିଅ ପାଏ ବା ୨୫୦ ଗ୍ରାମ୍ | ଆଠ ଅଣା ବା ପଚାଶ ପଇସା |
| ୪. ତେଲ ଏକ ଛଟାଙ୍କି ବା ୧୨୫ ଗ୍ରାମ୍ | ଏକ ଅଣା ବା ଛଅ ପଇସା |
| ୫. ଲୁଣ, ପରିବାଦି | ଏକ ଅଣା ବା ଛଅ ପଇସା |
| ୬. କୁକୁଡା ୨ ଗୋଟା | ଚାରି ଅଣା ବା ପଚିଶ ପଇସା |
| ୭. ଅଣ୍ଡା ୬ ଗୋଟା | ଏକ ଅଣା ଛଅ ପାହୁଲା ବା ଦଶ ପଇସା |
| ୮. ହାଣ୍ଡି, ଡିବି - ୪ ଗୋଟା | ଏକ ଅଣା ଛଅ ପାହୁଲା ବା ଦଶ ପଇସା |
| ୯. ମଇଦା - ଅଧସେର ବା ୫୦୦ ଗ୍ରାମ୍ | ଏକ ଅଣା ଛଅ ପଇସା |
| ୧୦. ଚିନି - ଦୁଇ ଛଟାଙ୍କି ବା ୧୨୫ ଗ୍ରାମ୍ | ନଅ ପାହୁଲା ବା ଊରି ପଇସା |
| ସମୁଦାୟ | ଏକ ଟଙ୍କା ଚାରି ଅଣା ନଅପାହୁଲା ବା ଏକ ଟଙ୍କା ଅଣତିରିଶ ପଇସା |

ପୁନଶ୍ଚ, ଷ୍ଟେଟ କର୍ମଚାରୀ ଓ ନୌକର ମାନଙ୍କୁ ଗୋଟିଏ ଓଳି ନିମନ୍ତେ ନିମ୍ନ ରସଦ୍ ଯୋଗାଇ ଦିଆ ଯାଉଥିଲା ଓ ଧାର୍ଯ୍ୟ ମୂଲ୍ୟ ନେବାର ବ୍ୟବସ୍ଥା ଥିଲା। କାଠ ଓ ପାଣି ବିନାମୂଲ୍ୟରେ ଯୋଗାଇ ଦିଆଯାଉଥିଲା।

| | (ଦଶମିକ୍ ମୁଦ୍ରାରେ) |
|---|---|
| ୧. ସରୁ ଅରୁଆ ଚାଉଳ - ଅଧସେର ବା ୫୦୦ ଗ୍ରାମ୍ | ଏକ ଅଣା ବା ଛଅ ପଇସା |
| ୨. ମୁଗଡାଲି ଏକ ଛଟାଙ୍କି ବା ୬୨ ଗ୍ରାମ୍ | ଛଅ ପାହୁଲା ବା ତିନି ପଇସା |
| ୩. ଘିଅ ଏକ ଛଟାଙ୍କି ବା ୬୨ ଗ୍ରାମ୍ | ଦୁଇ ଅଣା ବା ବାର ପଇସା |
| ୪. ତେଲ ଅଧ ଛଟାଙ୍କି ବା ୩୨ ଗ୍ରାମ୍ | ତିନି ପାହୁଲା ବା ଦେଢ଼ ପଇସା |
| ୫. ଲୁଣ, ପରିବାଦି | ଛଅ ପାହୁଲା ବା ତିନି ପଇସା |
| ୬. କୁକୁଡା ୧ ଗୋଟା | ଦୁଇ ଅଣା ବା ବାର ପଇସା |
| ୭. ଅଣ୍ଡା ୪ ଗୋଟା | ଏକ ଅଣା ବା ଛଅ ପଇସା |
| ୮. ହାଣ୍ଡି, ଡିବି - ୪ ଗୋଟା | ଏକ ଅଣା ଛଅ ପାହୁଲା ବା ଦଶ ପଇସା |
| ସମୁଦାୟ | ଆଠ ଅଣା ନଅ ପାହୁଲା ବା ଚଉବନ ପଇସା |

## ରାଜ୍ୟର ବିଗାଡ଼ି ବ୍ୟବସ୍ଥା

ଏହି ବ୍ୟବସ୍ଥା ନିମ୍ନ ବ୍ୟକ୍ତିମାନଙ୍କ ପାଇଁ କାର୍ଯ୍ୟକାରୀ ହେଉଥିଲା।

୧. ଏଜେନ୍ସି ଅଫିସର

୨. ସରକାରୀ କାର୍ଯ୍ୟରେ ଥିବା ଗଭର୍ଣ୍ଣମେଣ୍ଟ ଅଫିସର

୩. ରାଜାଙ୍କର ଏକ ପୁରୁଷ ଅନ୍ତର ରାଜପରିବାର

୪. ସାଧାରଣ କାର୍ଯ୍ୟରେ ଗସ୍ତ କରୁଥିବା ଷ୍ଟେଟ୍ କର୍ମଚାରୀ

## ବିଗାଡି ପାଇଁ ଧାର୍ଯ୍ୟ ଖର୍ଚ୍ଚ :-

କ. ଏକ ଜଣ ବିଗାଡି ପାଇଁ : ୧୦ ମାଇଲ ପର୍ଯ୍ୟନ୍ତ ମଜୁରୀ ଚାରିଅଣା ବା ୨୫ ପଇସା ଏବଂ ୧୫ ମାଇଲ୍ ପର୍ଯ୍ୟନ୍ତ ଛଅ ଅଣା ବା ୩୭ ପଇସା।

ଖ. ଏକ ଜଣ ବିଗାଡ଼ି ପାଇଁ : ୧୦ ମାଇଲ ପର୍ଯ୍ୟନ୍ତ ବଳଦଗାଡ଼ି ମଜୁରୀ ଟ.୧.୦୦।
୧୫ ମାଇଲ ପର୍ଯ୍ୟନ୍ତ ଟ. ୧.୫୦ପଇସା।

ଜଣେ ବିଗାଡ଼ିକୁ ୨୫ ସେରରୁ ଅଧିକ ବୋଝ ନେବାକୁ ହେବ ନାହିଁ। ୧୫ ମାଇଲରୁ ଅତିରିକ୍ତ କୌଣସି ବିଗାଡି ବା ଗାଡି କେହି ନେଲେ ତନ୍ନିମିତ୍ତ ଅନ୍ୟ ଏକ ଦିନର ମଜୁରୀ ଦେବାକୁ ହେବ।

## ବାମଣ୍ଡା ରେଭେନ୍ୟୁ ଆଇନ (୧୯୨୯)

ପ୍ରଜାମାନଙ୍କ ଉପରେ ନିମ୍ନଲିଖିତ ବେଠି ବା ବେଗାରି ମଧ୍ୟ ଧାର୍ଯ୍ୟ କରାଯାଉଥିଲା।

**କ. ଖେରା ବେଠି** - ପ୍ରଜାମାନେ ବିନା ମଜୁରୀରେ ସରକାରୀ କର୍ମଚାରୀ ମାନଙ୍କ ପାଇଁ ନୂତନ ଗୃହ ନିର୍ମାଣ କରିବେ ବା ପୁରାତନ ବାସଗୃହ ମରାମତି କରିବେ। କର୍ମଚାରୀ ମାନଙ୍କୁ ଏବଂ ଜେଲଖାନା ଓ ଡାକ୍ତରଖାନା ମାନଙ୍କୁ ବିନା ମୂଲ୍ୟରେ ଜାଳେଣି କାଠ ଯୋଗାଇ ଦେବେ। ଦେବଗଡ଼ ରାଜଧାନୀସ୍ଥ ଇଲେକ୍‌ଟ୍ରିକ୍ ମେସିନ୍ ପାଇଁ ମଧ୍ୟ ସେହିପରି ବିନା ମୂଲ୍ୟରେ କାଠ ଯୋଗାଇବା ବ୍ୟବସ୍ଥା ଥିଲା।

**ଖ. ସଡ଼କ ବେଠି** - ବର୍ଷାଋତୁ ପରେ ରାଜଧାନୀ ଦେବଗଡ଼ରୁ ବାମରା (ଗୋବିନ୍ଦପୁର) ରେଳଷ୍ଟେସନ ଯାଏ ମଟର ସଡ଼କ (କେବଳ ରାଜାଙ୍କ ବ୍ୟବହାର ପାଇଁ) ଓ ବଳଦ ଗାଡ଼ି - ସଡ଼କ ବିନା ପାରିଶ୍ରମିକରେ ପ୍ରଜାମାନେ ମରାମତି କରିବେ। ପୋଲ ଓ ମୁଖ୍ୟ ରାସ୍ତାରୁ ଗ୍ରାମକୁ ସଂଯୋଗ କରୁଥିବା ରାସ୍ତା ତିଆରି ଓ ମରାମତିର ଦାୟିତ୍ୱ ପ୍ରଜାମାନଙ୍କର ଥିଲା।

**ଗ. ସରକାରୀ ବଗିଚାରେ ବାଡ଼ବନ୍ଦୀ** -ପ୍ରଜାମାନଙ୍କ ଦ୍ୱାରା ହେବ। ସେତେବେଳେ ଦେବଗଡ଼, କୁଚିଣ୍ଡା, ଗୋବିନ୍ଦପୁର ଓ ବାରକୋଟ ଏହି ଚାରୋଟି ସ୍ଥାନରେ ସରକାରୀ ବଗିଚା ଥିଲା।

**ଘ. ହାକା କରିବା** -ରାଜା, ପଲିଟିକେଲ ଏଜେଣ୍ଟ, ରାଜ ପରିବାର ଓ ସେମାନଙ୍କ ବନ୍ଧୁବାନ୍ଧବଙ୍କ ଆମୋଦ ପ୍ରମୋଦ ପାଇଁ ଶିକାର କରିବା ସମୟରେ ପ୍ରଜାମାନେ ହାକା କରିବେ।

ଡ. ହାତୀଧରା (ବାଧ୍ୟତା ମୂଳକ) - ହାତୀ ଧରାରେ ପ୍ରଜାକୁଳ ଅତିଷ୍ଠ ହୋଇ ପଡୁଥିଲେ। ଜଙ୍ଗଲରେ ହାତୀ ସଂଖ୍ୟା ବଢ଼ିଗଲେ ଓ ସେମାନେ ଆସି ଧାନ ଫସଲ, ଆଖୁ କିଆରୀ ବା କଦଳୀ ବଣ ଓ ଗ୍ରାମ ଆଦି ଉପରେ ଆକ୍ରମଣ କରି ନଷ୍ଟ କଲେ ସେମାନଙ୍କୁ ଧରିବା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ନିରୂପଣ କରାଯାଉଥିଲା। ହାତୀଧରାରେ 'କାହାର ପୁଷମାସ ତ କାହାର ସର୍ବନାଶ'। ରାଜା ଓ ରାଜକର୍ମଚାରୀ ଏବଂ ରାଜାଙ୍କ ନିମନ୍ତ୍ରିତ ପଲ୍‌ଟିକାଲ ଏଜେଣ୍ଟ, କମିଶନର ତଥା ବଡ ସାହେବମାନଙ୍କ 'ହାତୀଧରା' ମଉଜ ମଜଲିସ୍ ପାଇଁ ଉଦ୍ଦିଷ୍ଟ ଥିବା ବେଳକୁ ପ୍ରଜାକୁଳଙ୍କ ଅସରନ୍ତି ଦୁଃଖ। ସାଧାରଣତଃ ଶୀତମାସରେ, ଜମିରେ ଫସଲ ଥିବା ସମୟରେ ହାତୀଧରାର ବ୍ୟବସ୍ଥା ହୁଏ। ହାତୀପଲ ପ୍ରାୟ ଜଙ୍ଗଲ ବା ଝରଣା କୂଳରେ ରହନ୍ତି ଏବଂ ରାତିରେ ଆସି ଫସଲ ଖାଇ ନଷ୍ଟ କରି ନିଜସ୍ଥାନକୁ ଫେରିଯାନ୍ତି। ହାତୀ ରହୁଥିବା ନିକଟବର୍ତ୍ତୀ ସ୍ଥାନରେ ବଡ଼ ବଡ଼ କାଠ ଗଣ୍ଡିରେ ଗୋଟିଏ ବେଢ଼ା କରାଯାଏ। ତାକୁ 'ଜଗତ ବେଢ଼ା' ବା ଇଂରାଜୀରେ Stockade କୁହାଯାଏ। ସେହି କାଠଗଣ୍ଡିରେ ବଡ ବଡ ଲୁହାକଣ୍ଟା ମରାଯାଇଥାଏ। ହାତୀ ମୁଣ୍ଡିଆ ମାଇଲେ ମୁଣ୍ଡରେ କଣ୍ଟା ପଶିବ, ଏଣୁ ସେ ଭୟରେ ବେଢ଼ାକୁ ଭାଙ୍ଗି ପାରିବ ନାହିଁ। ଜଗତବେଢ଼ାର ଗୋଟିଏ ପାଖରେ ଫାଟକ ଥାଏ ଏବଂ ଉପରେ ମୋଟା ଦଉଡି ସାହାଯ୍ୟରେ କଣ୍ଟା ମରାଯାଇଥିବା କବାଟ ଝୁଲୁଥାଏ। ଜଗତବେଢ଼ା ଭିତରୁ ପାଟକ ଦେଇ ବାହାର ପର୍ଯ୍ୟନ୍ତ ଆଖୁ ଓ ଧାନର କୃତ୍ରିମ ଆକର୍ଷଣୀୟ ଫସଲ ଖେତ ସୃଷ୍ଟି କରାଯାଇଥାଏ। ହାତୀ ଲୋଭରେ ଯେପରି ବେଢ଼ା ମଧ୍ୟରେ ପଶିବ, ସେ ବ୍ୟବସ୍ଥା କରାହୁଏ। ପ୍ରଜାମାନେ 'ଜଗତବେଢ଼ା ଚାରିଆଡେ ଘେରି ରହନ୍ତି। ହାତୀ କିପରି ଫାଟକ ଆଡକୁ ମୁହାଁଇବ ତାର ବ୍ୟବସ୍ଥା କରାହୁଏ। ପ୍ରଜାମାନେ ସାରା ଦିନ ଓ ରାତି ନିଆଁ ଜାଳି ଜଗି ବସିଥାନ୍ତି। ସେମାନଙ୍କ ଖାଇବା କାମ ଗୌଣ। ରାତିରେ କାଳେ କିଏ ଶୋଇପଡ଼ିବ ସେଥିପାଇଁ ବିଟ୍ ବ୍ୟବସ୍ଥା ଥାଏ ବା ନିୟମିତ ବାର୍ତ୍ତା ପ୍ରେରଣ ବ୍ୟବସ୍ଥା କରାଯାଇଥାଏ। ଶିକାରୀ ମାନେ ହାତୀକୁ ଜଗତବେଢ଼ାର କୃତ୍ରିମ ଜଙ୍ଗଲ ମଧ୍ୟରେ ପଶାଇବାକୁ ଚେଷ୍ଟା କରନ୍ତି। ହାତୀ ଭାରି ଚାଲାକ୍ କୌଣସି ସୂଚନା ପାଇଲେ ଆଦୌ ପଶିବ ନାହିଁ। ଏଣୁ ତତ୍‌ପ୍ରତି ବିଶେଷ ସାବଧାନ ହେବାକୁ ପଡେ। ଫାଟକର ଝୁଲା କବାଟ

ଦୁଇପାଖରେ ଦୁଇଜଣ ଧାରୁଆ ଟାଙ୍ଗିଆ ଧରି ବସିଥାନ୍ତି। ହାତୀପଲ ପଶିବା ମାତ୍ରକେ ଇସାରା ପାଇଲେ ଏକାଚୋଟକେ ଯେପରି ଦଉଡି ଛିଣ୍ଡିବ ସେଥିପାଇଁ ସତର୍କ ଥାଆନ୍ତି। ହାତୀ ପଶିବା ମାତ୍ରକେ ସେମାନଙ୍କୁ ଇଙ୍ଗିତ ଦିଆହୁଏ ଓ ସେମାନେ ଫାଟକ ଉପରେ ବନ୍ଧା ଯାଇଥିବା ଦଉଡି କାଟନ୍ତି। ହାତୀ ଜଗତବେଢ଼ା ମଧ୍ୟରେ ରହି ଫସଲ ଖାଇବା ପରେ ବାହାରକୁ ଆସିବା ପାଇଁ ଚେଷ୍ଟା କରେ କିନ୍ତୁ ସମ୍ଭବ ହୁଏ ନାହିଁ। ହତୀକୁ ବେଢ଼ା ମଧ୍ୟକୁ ପଶିବା ପଇଁ ହୋହଲ୍ଲା, ବାଉଁଶନଳୀର ଏକ ପ୍ରକାର ଶବ୍ଦ, ବାଜା ବଜାଇବା, ବାଣ ଫୁଟାଇବା ଆଦି ବିଭିନ୍ନ ଉପାୟ ଅବଲମ୍ବନ କରାଯାଏ। ଜଗତବେଢ଼ା ମଧ୍ୟସ୍ଥ ଖାଦ୍ୟ କ୍ରମଶଃ ଶେଷ ହୋଇଯାଏ। ହାତୀ ଦିନୁ ଦିନ ଦୁର୍ବଳ ହୋଇ ପଡେ। ନୂଆ ହାତୀମାନଙ୍କ ଗୋଡମାନଙ୍କୁ କୌଶଳକ୍ରମେ ବାନ୍ଧିବା ପାଇଁ ବେଢ଼ାର ପଛପାଟ କବାଟ ଦେଇ କୁଟୁଣୀ ହାତୀ ବା ପୋଷା ହାତୀ ମାନଙ୍କୁ ଭିତରକୁ ପଶାଯାଏ। ଆଗର ଗୋଟିଏ ଗୋଡ ଓ ପଛର ଦୁଇଗୋଡ ବନ୍ଧା ହେବା ପରେ ଦଉଡିକୁ ନେଇ ବଡ ବଡ ଗଣ୍ଡି ବା କାଠରେ ବନ୍ଧା ହୁଏ। ହାତୀମାନେ ଦଉଡି ଛିଣ୍ଡାଇ ବାହାରି ଯିବାକୁ ବହୁତ ଚେଷ୍ଟା କରନ୍ତି, ଚିତ୍କାର କରନ୍ତି କିନ୍ତୁ ସମ୍ଭବ ହୁଏ ନାହିଁ। କିଛି ଦିନ ଗଲା ପରେ ଦୁଇଟି ପୋଷା ହାତୀଙ୍କୁ ନେଇ ନୂଆ ହାତୀମାନଙ୍କୁ ତାଲିମ ଦିଆହୁଏ। ନୂଆହାତୀ ପୋଷା ମାନିବା ପରେ ରାଜଧାନୀ ଦେବଗଡ଼କୁ ନିଆଯାଏ। ସେ ବି ଏକ ଶୋଭାଯାତ୍ରା। ଗାଁରୁ ଗାଁକୁ ଚୌକିଦାରମାନେ ସଙ୍ଗରେ ଯାଆନ୍ତି। ଯେଉଁ ଗାଁରେ ରହଣି ହୁଏ ସେହି ଗାଁର ଗୌନ୍ତିଆ ହାତୀମାନଙ୍କ ଓ ମାହୁନ୍ତ ମାନଙ୍କ ସମସ୍ତ ଖର୍ଚ୍ଚ ବହନ କରନ୍ତି।

ହାତୀଧରା ପୂର୍ବରୁ ପାହାନ୍ତା ପହରରୁ ନାଲି ଟୋପିପିନ୍ଧା ସିପାହୀ ଆସି ଗାଁରେ ପହଞ୍ଚିବେ। ହାତୀଧରା ସ୍ଥାନର ଖର୍ଚ୍ଚ ପାଇଁ ପ୍ରଜାମାନଙ୍କ ଠାରୁ ରସଦ୍ ଆକାରରେ ବାସନା ଅରୁଆ ଚାଉଳ, ମୁଗଡାଲି, ଗୁଆଘିଅ ଓ ଖାସି ସଂଗ୍ରହ ହେବ। ପ୍ରଜା ହାତୀଧରା ସ୍ଥାନରେ ନିଜେ ରହିବା ପାଇଁ, ରାନ୍ଧିବା ଓ ଖାଇବା ଜିନିଷ, ଶୀତ ବସ୍ତ୍ର ଆଦି ଯୋଗାଡ଼ କରି ପ୍ରସ୍ତୁତ ହୋଇ ରହିଥିବେ। ଆଦେଶ ଆସିବା ମାତ୍ରେ ଘରୁ ବାହାରିଯିବ। ହାତୀଧରା କେତେଦିନ ଲାଗିବ, ତାହା ଅନିଶ୍ଚିତ। ଖାଦ୍ୟ

ଜିନିଷ ମଝିରେ ଶେଷ ହେଲେ ଭୋକରେ ରହିବା ଛଡା ଅନ୍ୟ ଉପାୟ ନାହିଁ। ଶୀତଦିନରେ ଘଞ୍ଚ ଅରଣ୍ୟ ଅଞ୍ଚଳରେ କାଲୁଆ ପବନରେ ଅର୍ଦ୍ଧ ବୁଭୁକ୍ଷୁ ଅବସ୍ଥାରେ ଅନିଦ୍ରା ହୋଇ ପ୍ରଜାମାନଙ୍କୁ ମାସାଧିକ କାଳ କଟାଇବାକୁ ପଡେ।

ଏ ଗଲା ରାଜ ସରକାରଙ୍କ ପ୍ରଜାଙ୍କ ଉପରେ ଧାର୍ଯ୍ୟ ବେଠି ବେଗାରୀ। ଭୂମିହୀନ ବା ସୁଖବାସୀ[୧୪] ମାନଙ୍କୁ ସେଥିରୁ ମୁକ୍ତି ଦିଆଯାଉଥିଲେ ମଧ୍ୟ ସେମାନଙ୍କ ଠାରୁ ବିଭିନ୍ନ କର (ଟାକ୍ସ) ଅସୁଲ ହେଉଥିଲା।

କ. **ଚୁଲୀ ପଞ୍ଚା** – ଏ ହେଲା ଜଙ୍ଗଲର ଜାଳେଣି କାଠ ସଂଗ୍ରହ କରିବା ପାଇଁ କର।

ଖ. **ଶାଳ ପଞ୍ଚା** – କେଉଟ, କୁମ୍ଭାର, ଖାତି, ଧୋବା, କମାର ମାନଙ୍କ ଠାରୁ ସେମାନଙ୍କ ଜାତିଗତ ବ୍ୟବସାୟ ପାଇଁ ଆବଶ୍ୟକ ପଡୁଥିବା ଜାଳେଣି କାଠ ସଂଗ୍ରହ ନିମନ୍ତେ କର ଦେବାକୁ ପଡୁଥିଲା।

ଗ. **ଆତ୍ମରକ୍ଷା ପାଇଁ** – ପ୍ରଜାମାନେ ଆତ୍ମରକ୍ଷା ପାଇଁ ଧନୁଶର, ଫଳସିଆ ରଖୁଥିଲେ, ସେଥିପାଇଁ ମଧ୍ୟ ବାର୍ଷିକ କର ଧାର୍ଯ୍ୟ ହେଉଥିଲା।

ଏତଦ୍ ବ୍ୟତୀତ ଗାଈ, ବଳଦ, ଛେଳି, ଘୋଡା ଆଦି ସରକାରୀ ଜମି ବା ସରକାରୀ ଜଙ୍ଗଲରେ ଚରିବା ପାଇଁ ମାଲିକଙ୍କ ଠାରୁ ଖଳଚର ବା (Grazing Tax) ଅସୁଲ କରାଯାଉଥିଲା।

୧୯୨୯ ମସିହା ଭୂବନ୍ଦୋବସ୍ତ ପରେ ଜମିର ଖଜଣା ଚାରିଗୁଣ ବଢ଼ିଗଲା। ଏତଦ୍‌ବ୍ୟତୀତ, ରାଜ୍ୟ ସରକାର ଆଇନ୍ କରିଥିଲେ ଯେ ଚାଷୀମାନେ ଟଙ୍କାକୁ ୩୨ ସେରରୁ କମ୍ ଚାଉଳ ବିକ୍ରୟ କରିପାରିବେ ନାହିଁ। ସେହି ସମୟରେ ମୋଗଲବନ୍ଦୀ ଅଞ୍ଚଳରେ ଟଙ୍କାକୁ ମାତ୍ର ଆଠସେର ଚାଉଳ ବିକ୍ରୟ ହେଉଥିଲା। ଚୋରାଲୁଚାରେ ଚାଉଳ ସୀମାନ୍ତ ଅଞ୍ଚଳରେ ବିକ୍ରିୟ ହେଉଥିବା ଦେଖି ପୋଲିସ ଓ ଯୋଗାଣ ବିଭାଗର କର୍ମଚାରୀ ମାନେ ସୀମାରେ ଜଗିଲେ ତଥାପି ଚାଉଳ ଚାଲାଣ ଅବ୍ୟାହତ ରହିଲା। ଯେଉଁମାନେ ଧରା ପଡୁଥିଲେ, ସେମାନଙ୍କ ଜିନିଷ ଜବତ୍ ସାଙ୍ଗକୁ ସେମାନଙ୍କୁ ଜେଲ, ଜୋରିମାନା ଦଣ୍ଡ ବି ଭୋଗ କରିବାକୁ ପଡୁଥିଲା। ଏପରି ଭାବେ ପ୍ରଜାକୁଳ ନିର୍ଯାତିତ ଜୀବନ ଅତିବାହିତ କରୁଥିଲେ।

ସେତେବେଳେ ଗାଁ ମାନଙ୍କରେ ଚୌକିଦାରୀ ପ୍ରଥା ପ୍ରଚଳନ ଥିଲା । ସେମାନେ ଗ୍ରାମରେ ପୋଲିସ କାମ କରୁଥିଲେ । ରାତିରେ ପହରା ଦେବା ବ୍ୟତୀତ ଚୋରି, ଡକାୟତି, କୌଣସି ଗଣ୍ଡଗୋଳ ବା ସରକାର ବିରୋଧୀକାମ ହେଲେ ନିକଟସ୍ଥ ଥାନାକୁ ଯାଇ ରିପୋର୍ଟ ଦେଉଥିଲେ । ଗାଁକୁ ସରକାରୀ କର୍ମଚାରୀ ଆସିଲେ ସେମାନଙ୍କ ସହ ଯୋଗସୂତ୍ର ରକ୍ଷା କରୁଥିଲେ । ଚୌକିଦାର ମାନେ ଗୌନ୍ତିଆଙ୍କ ଥିଲେ ହାତବାରିସି । ପ୍ରତି ସପ୍ତାହରେ ଦିନେ ପୁଲସ୍‌କୁ ଯାଇ 'ଜନ୍ମମୃତ୍ୟୁ ରିପୋର୍ଟ' ଦେବା ସହ ଗ୍ରାମର ଭଲମନ୍ଦ ପ୍ରତ୍ୟେକ ବିଷୟରେ ପୁଲିସ୍‌କୁ ଅବଗତ କରାଉଥିଲେ । କୌଣସି ସରକାରୀ ନିର୍ଦ୍ଦେଶ ଥିଲେ ତାହା ଗୌନ୍ତିଆଙ୍କୁ ଜଣାଇବା ସହ ଗାଁ ସଭା ଡାକି ଉଭୟ ଗୌନ୍ତିଆ ଓ ଚୌକିଦାର ଜନସାଧାରଣଙ୍କୁ ବୁଝାଉଥିଲେ । ଏହି କାର୍ଯ୍ୟପାଇଁ ଚୌକିଦାରମାନେ ନିଷ୍କର ଜମି ଦଖଲ କରୁଥିଲେ ।

## ବାମଣ୍ଡା ରାଜ୍ୟର ସାମାଜିକ ବ୍ୟବସ୍ଥା

ବାମଣ୍ଡାର ରେଭେନ୍ୟୁ ନିୟମାବଳୀ, ୧ ୯ ୨ ୯ ରୁ ଜଣାଯାଏ ସମାଜକୁ ତିନୋଟି ସ୍ତରରେ ବିଭକ୍ତ କରାଯାଇଥିଲା ।

୧ମ ଶ୍ରେଣୀ - ମାରଓ୍ୱାଡି ଓ ବଣିକ

୨ୟ ଶ୍ରେଣୀ - କ୍ଷତ୍ରିୟ, ବ୍ରାହ୍ମଣ, ଚଷା, କୁଲୁତା, ଆଗରିଆ ଓ ପ୍ରଥମ ଓ ତୃତୀୟ ଶ୍ରେଣୀ ବ୍ୟତୀତ ଅନ୍ୟାନ୍ୟ ଜାତି ।

୩ୟ ଶ୍ରେଣୀ - କନ୍ଧ, ଗଣ୍ଡ, କୋହ୍ଲ, ମୁଣ୍ଡା, ଓରାମ, ଭୂୟାଁ, ଖଡିଆଁ, ଝରା, ଲୋଧା, ତୁରି, ବିଞ୍ଝାଲ୍, ତନ୍ତି, କିଶାନ, ପାଣ, ଘାସି ଓ ଭାଟ ।

ରାଜ୍ୟରେ ନିମ୍ନ ଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ଜମିଜମା ଆଇନ୍ କଠୋର ଥିଲା । ସରକାରୀ ମଞ୍ଜୁରୀ ବ୍ୟତୀତ କେହି ନିଜ ଜମି ବା ଅନ୍ୟ ସ୍ଥାବର ସମ୍ପତ୍ତି ପ୍ରଥମ ଶ୍ରେଣୀ ଲୋକଙ୍କ ଠାରେ ବିକ୍ରି, ବନ୍ଧକ, ଲଗାଣ ବା କୌଣସି ପ୍ରକାରେ ହସ୍ତାନ୍ତର କରିପାରିବେ ନାହିଁ । ଉଦାହରଣ ସ୍ୱରୂପ, ଜଣେ ମାରଓ୍ୱାଡି ଯେ କୌଣସି ବ୍ୟକ୍ତିଠାରେ ବିକ୍ରି କରିପାରେ । ଜଣେ ଚଷା 'ହୋ' ଜାତି ଠାରେ ବିକ୍ରୟ କରିପାରେ, କିନ୍ତୁ ମାରଓ୍ୱାଡିକୁ

ବିକ୍ରି କରିପାରିବ ନାହିଁ। ସେହିପରି ଜଣେ 'ହୋ' ଜାତିର ଲୋକ ଜଣେ ଭୂୟାଁକୁ ତାର ଜମି ବା ସମ୍ପତ୍ତି ବିକ୍ରି କରିପାରେ କିନ୍ତୁ ଚଷା ବା ମାରଓ୍ୱାଡିକୁ ବିକ୍ରି କରିପାରିବ ନାହିଁ।

ପୁନଶ୍ଚ, ଖାରଜ ଦାଖଲର ଦ୍ୱିତୀୟ ଭାଗ ନିୟମାବଳୀରେ ଥିଲା ଯେ ମୃତା ବା ଇସ୍ତଫା ଦେଇଥିବା କନ୍ଧ, ଗଣ୍ଡ, କୋହ୍ଲ, କିଷାଣ, ଖଡିଆ, ଭୂୟାଁ ଓ ପାଣ ମାନଙ୍କ ଜମିରେ ଗୌନ୍ତିଆ ସେହି ଶ୍ରେଣୀର ପ୍ରଜା ବନ୍ଦୋବସ୍ତ କରିବେ। ରାଜ୍ୟ ସରକାରଙ୍କ ବିନା ଅନୁମତିରେ ଅନ୍ୟ ଶ୍ରେଣୀର ପ୍ରଜା ନିଯୁକ୍ତ କରିପାରିବେ ନାହିଁ।

ଏତଦ୍ ବ୍ୟତୀତ ନାରୀ ଜାତିର ସ୍ୱାର୍ଥସଂରକ୍ଷଣ ପାଇଁ କେତେକ ବ୍ୟବସ୍ଥା ଥିଲା। ସେମାନେ ଯେପରି କୋର୍ଟ କଚେରୀରେ ହଇରାଣ ହରକତ ନ ହୁଅନ୍ତି, ସେଥିପାଇଁ ଆଇନକୁ କୋହଳ କରାଯାଇଥିଲା। ଆହୁରି ମଧ୍ୟ ସ୍ତ୍ରୀ ଲୋକମାନେ ଦଖଲ କରୁଥିବା ରୟତ ଜମି ଖାରଦ ଦାଖଲ କରିବାକୁ କୌଣସି ବାଧା ସୃଷ୍ଟି ନ କରିବାକୁ ଆଇନ୍‌ରେ ଉଲ୍ଲେଖ ଥିଲା।

ପୂର୍ବତନ ବାମଣ୍ଡା ରାଜ୍ୟରେ ଗ୍ରାମ ଗୁଡ଼ିକୁ ଛଅ ଭାଗରେ ବିଭକ୍ତ କରାଯାଇଥିଲା। ଯଥା -

୧. ରାଜାଙ୍କ ଖମାର ଗ୍ରାମ

୨. ଖରପୋଷ ଗ୍ରାମ

୩. ଦାନ ଗ୍ରାମ (୩୭ ଖଣ୍ଡ ଗ୍ରାମ ଡମ୍ବରୁଧରପ୍ରିୟା ଦେବୀଙ୍କୁ ଦାନ କରାଯାଇଥିଲା)

୪. ବ୍ରହ୍ମୋତ୍ତର ଗ୍ରାମ ଓ ଦେବୋତ୍ତର ଗ୍ରାମ

୫. ଗୌନ୍ତି ଗ୍ରାମ

୬. ପଟଓ୍ୱାରୀ ପରିଚାଳିତ ଗ୍ରାମ।

## ବାମଣ୍ଡା ରାଜ୍ୟ ଶାସନରେ ବ୍ରାହ୍ମଣ ମାନଙ୍କ ସ୍ଥିତି

ଗଙ୍ଗ ଓ ଗଜପତି ବଂଶର ରାଜତ୍ୱ କାଳରେ ରାଜା ଗଣ ବ୍ରାହ୍ମଣ ମାନଙ୍କୁ ଗ୍ରାମ ଓ ଭୂମି ଦାନ କରି ବର୍ଣ୍ଣାଶ୍ରମ ଧର୍ମର ପ୍ରତିଷ୍ଠା କରିଥିଲେ। ବର୍ଣ୍ଣାଶ୍ରମ ଧର୍ମରେ ବ୍ରାହ୍ମଣର ସ୍ଥାନ ଶ୍ରେଷ୍ଠ ଥିଲା। ବ୍ରାହ୍ମଣମାନେ ରାଜାଙ୍କ ଠାରୁ ଆରମ୍ଭ କରି ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତ ସ୍ତରର ଲୋକଙ୍କ ଠାରୁ ଶ୍ରେଷ୍ଠ ଆଦର ଓ ସମ୍ମାନ ପାଉଥିଲେ। ସେମାନେ ସମାଜର

ଊର୍ଦ୍ଧ୍ୱରେ ରହି ଅନ୍ୟାନ୍ୟ ଜାତି ଓ ଉପଜାତିର ଲୋକମାନଙ୍କ ଠାରୁ ସେବା ଓ ସମ୍ମାନ ପାଇଲେ । ବ୍ରାହ୍ମଣ ମାନଙ୍କ ମୁଖ୍ୟ କର୍ତ୍ତବ୍ୟ ଥିଲା ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ ଓ ପ୍ରତିଗ୍ରହଣ । ଏତଦ୍‌ବ୍ୟତୀତ ସେମାନେ ନିଜର ପ୍ରତିଷ୍ଠା ପାଇଁ କୌଣସି ଏକ ମହର୍ଷିଙ୍କ ବଂଶଧର ବୋଲି ପ୍ରମାଣ କରୁଥିଲେ ।

ବାମଣ୍ଡା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଥିବା ହେତୁ ବିଭିନ୍ନ ସାମାଜିକ କର୍ମକର୍ମାଣୀ ପାଇଁ ବ୍ରାହ୍ମଣ ମାନଙ୍କ ଆବଶ୍ୟକ ହେଲା । ରାଜନ୍ୟବର୍ଗ ଦେଶର ବିଭିନ୍ନ ଅଞ୍ଚଳରୁ ବ୍ରାହ୍ମଣ ମାନଙ୍କୁ ପୁରୋହିତ, ରାଜ ଜ୍ୟୋତିଷ, ଶିକ୍ଷକ ରୂପେ ଆଣି ବ୍ରାହ୍ମଣ ଶାସନ ବସାଇଲେ । ସେମାନେ ନିଷ୍କର ଭୂମି ଭୋଗ କରିବାର ବ୍ୟବସ୍ଥା କରାଗଲା । ବାମଣ୍ଡାର ଆଦି ରାଜା ସରଯୁଦେବ ପୁରୋହିତ ଦେବାନନ୍ଦ ମହାପାତ୍ରଙ୍କୁ ପାଟଣାରୁ ଆଣି 'କିରା' ଗ୍ରାମ (କୁଚିଣ୍ଡା ସବ୍‌ଡିଭିଜନ୍‌ସ୍ଥ ଏକ ଶାସନ ଗ୍ରାମ) ଦାନ କରିଥିଲେ । ଏତଦ୍‌ବ୍ୟତୀତ, ଦେବଗଡ଼ ସବ୍‌ଡିଭିଜନସ୍ଥ ବ୍ରାହ୍ମଣୀ ନଦୀ କୂଳରେ 'ଜଡାଗୋଳା' ନାମକ ଏକ ବ୍ରାହ୍ମଣ ଶାସନ ଥିଲା । ସେହି ଶାସନ ଗ୍ରାମ ଏବେ ରେଙ୍ଗାଲି ନଦୀବନ୍ଧ ଯୋଜନାରେ ନିମଜ୍ଜିତ । ଅନ୍ୟାନ୍ୟ ଶାସନ ଗ୍ରାମ ତୁଳନାରେ ଏହି ଦୁଇଟି ବଡ ଗ୍ରାମ । ବ୍ରାହ୍ମଣ ମାନେ ନିଜ ପରାକାଷ୍ଠାର ନିଦର୍ଶନ ସ୍ୱରୂପ କେତେକ ନିୟମକାନୁନ ପ୍ରଣୟନ କରିଥିଲେ । ଅସବର୍ଣ୍ଣ ଜାତିର ଲୋକ ଗ୍ରାମକୁ ପ୍ରବେଶ କରିବା ନିଷିଦ୍ଧ ଥିଲା । ଯଦି ଗ୍ରାମ ମଧ୍ୟରେ ଯିବା ନିହାତି ଦରକାର ହୁଏ ତେବେ ଖାଲିପାଦରେ ଯିବେ । ଯୋତା, ଚଟି ବା କଠଉ ବ୍ୟବହାର କିରପାରିବେ ନାହିଁ । ଏପରିକି ଅସବର୍ଣ୍ଣ ଜାତିର କୌଣସି ବ୍ୟକ୍ତି ଗ୍ରାମରେ ପ୍ରବେଶ କଲେ ସଂସ୍କାର ପୂର୍ବକ ଗୋବର ଓ ତୁଳସୀ ପାଣିରେ ଛିଞ୍ଚି ଦାଣ୍ଡବାଟକୁ ପବିତ୍ର କରାଯାଉଥିଲା । ଏହି ଦୁଇ ଶାସନ ଗ୍ରାମ ବ୍ୟତୀତ ବାସୁଦେବପୁର (କରଡା ଖମଣ) ଓ ରେଙ୍ଗଡା ଶାସନ ଗ୍ରାମ । ରାଜଧାନୀ ଦେବଗଡ଼ରେ ବ୍ରାହ୍ମଣମାନଙ୍କୁ ନେଇ ଶାସନ ସାହି, ଗୁରୁ ସାହି ବସ୍ତି ବସାଯାଇଥିଲା ଏବଂ ସେମାନଙ୍କ ପାଇଁ ନିଷ୍କର ଜମିର ବ୍ୟବସ୍ଥା ହୋଇଥିଲା ।



# ବାମଣ୍ଡାରେ ପ୍ରଜା ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମ

## ପ୍ରଥମ ସ୍ୱାଧୀନତା ସଂଗ୍ରାମ

ଆଦିବାସୀ ସଂପ୍ରଦାୟ ବାମଣ୍ଡା ରାଜ୍ୟର ମୂଳ ବାସିନ୍ଦା। ବାମଣ୍ଡାର ଘନ ଅରଣ୍ୟ ମଧ୍ୟରେ ସେମାନେ ସ୍ୱାଧୀନ ଭାବେ ବସବାସ କରୁଥିଲେ। ଜଳ, ଜମି, ଜଙ୍ଗଲ ସେମାନଙ୍କ ସମ୍ପୂର୍ଣ୍ଣ ଅକ୍ତିଆରରେ ଥିଲା। ସେମାନଙ୍କ ଏହି ଅଧିକାର ଉପରେ ବାହାର ଶକ୍ତିର କୌଣସି ହସ୍ତକ୍ଷେପ ନ ଥିଲା। ପରବର୍ତ୍ତୀ କାଳରେ ରାଜନ୍ୟବର୍ଗ ମଧ୍ୟ ସେମାନଙ୍କୁ ସେଇ ସୁବିଧା ସୁଯୋଗ ଦେଇଥିଲେ। ସେମାନଙ୍କ ମଧ୍ୟରେ ଯେଉଁମାନେ ଗୋଷ୍ଠୀର ସ୍ୱାର୍ଥରକ୍ଷା ପାଇଁ ନେତୃତ୍ୱ ଦେଉଥିଲେ, ସେମାନେ କାଳକ୍ରମେ ଜମିଦାର ହେଲେ ଏବଂ ସ୍ଥାନୀୟ ବାସିନ୍ଦା ଜମିଦାରଙ୍କ ବୋଲ ମାନି ଚଳୁଥିଲେ। ଆଦିବାସୀ ସମ୍ପ୍ରଦାୟ ଯେତିକି ସରଳ, ନିଷ୍କପଟ, ସେତିକି ସ୍ୱାଭିମାନୀ। ସମୟକ୍ରମେ ବିଭିନ୍ନ ଆଳ ଦର୍ଶାଇ ସେମାନଙ୍କ ଫୁଟକଟା ଜମିରୁ ବିସ୍ଥାପିତ ହେଲେ। ବ୍ରିଟିଶ ଶାସକଙ୍କ ହସ୍ତକ୍ଷେପ ଫଳରେ ସେମାନେ କ୍ରମଶଃ ବିଦ୍ରୋହୀ ହୋଇ ଉଠିଲେ ଏବଂ ସଂଘବଦ୍ଧ ଭାବେ ସଂଗ୍ରାମ ଆରମ୍ଭ କଲେ। ମହାରାଜା ସାଏଙ୍କ ମୃତ୍ୟୁପରେ ସୁରେନ୍ଦ୍ର ସାଏ ସମ୍ବଲପୁର ରାଜଗାଦୀ ପାଇଁ ଦାବୀଦାର ହେଲେ କିନ୍ତୁ ଇଂରେଜ ସରକାର ତାଙ୍କୁ ରାଜା କରିବାକୁ ସମ୍ମତ ହେଲେନାହିଁ। ଘଟଣା କ୍ରମେ, ଝାରସୁଗୁଡ଼ା ଜମିଦାର ଗୋବିନ୍ଦ ସିଂ ମଧ୍ୟ ସମ୍ବଲପୁର ରାଜଗାଦିର ଦାବୀଦାର ହୋଇ ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ କଲେ ଏବଂ ତାଙ୍କୁ ସମର୍ଥନ ଜଣାଇ ବାମଣ୍ଡା ଜମିଦାର ଚନ୍ଦ୍ର ବେହେରା ତାଙ୍କୁ ସହଯୋଗ କରିବାକୁ ଆଗେଇ ଆସିଲେ। ବ୍ରିଟିଶ ଶାସକଙ୍କ ତାଗିଦ ସତ୍ତ୍ୱେ ବାମଣ୍ଡା ରାଜା ତାଙ୍କୁ ଜବତ୍ କରିପାରିଲେ ନାହିଁ। ଚନ୍ଦ୍ର ବେହେରା କନ୍ଧ ସମ୍ପ୍ରଦାୟର। ଇଂରେଜ ସୈନ୍ୟବାହିନୀ ସହ ମୁକାବିଲାରେ ତାଙ୍କ ଗୋଷ୍ଠୀର ବହୁ ଆଦିବାସୀ ପ୍ରାଣ ହରାଇଥିଲେ।

କେପ୍‌ଟେନ୍ ଉଇଲ୍‌କିନ୍‌ସନ୍ ବିଦ୍ରୋହୀମାନଙ୍କ ସହ ମୁକାବିଲା ନ କରି ଆପୋଷ ମିଳାମିଶା କରିବାକୁ ଚାହିଁ ମରହଟ୍ଟାମାନଙ୍କ ଦ୍ୱାରା ଉଚ୍ଛେଦିତ ଜମିଦାରଙ୍କୁ ସେମାନଙ୍କ ଜମିଦାରୀ ଫେରସ୍ତ କଲେ। ଏତଦ୍ୱାରା ବାମଣ୍ଡା କୁଡ଼ାବଗା ଜମିଦାରୀ ଜମିଦାର ବଳଭଦ୍ର ସାଏ ଫେରସ୍ତ ପାଇଲେ। ଏସବୁ ସତ୍ତ୍ୱେ ବି ବିଦ୍ରୋହ ପ୍ରଶମିତ ନ ହେବାରୁ କେପ୍‌ଟେନ୍ ଉଇଲ୍‌କିନ୍‌ସନ୍ ଚନ୍ଦ୍ର ବେହେରାଙ୍କୁ ଧରିବା ପାଇଁ ରାଣୀ ମୋହନକୁମାରୀଙ୍କୁ ୧୫୦ ଜଣ ସଶସ୍ତ୍ର ସୈନିକ ଯୋଗାଇଦେଲେ। ୧୯୩୩ ଜୁନ ୨୨ ତାରିଖରେ ଚନ୍ଦ୍ର ବେହେରା ଓ ତାଙ୍କ ସହଯୋଗୀଗଣ ଧରାପଡ଼ିଲେ। ଏହି ବିଦ୍ରୋହରେ ବାମଣ୍ଡାର କୃଷ୍ଣ ବେହେରା ଓ କୃପାସିନ୍ଧୁ ବେହେରା ନାମକ ଦୁଇଜଣ କନ୍ଧ ନେତା ସାମିଲ ହୋଇଥିଲେ। ୧୮୪୦ ସାଲ୍‌ରେ ଅନେକ ବିପ୍ଳବୀ ଆହତ ଓ ନିହତ ହେଲେ। ସୁରେନ୍ଦ୍ର ସାଏ, ତାଙ୍କ ଭାଇ ଉଦନ୍ତ ସାଏ ଓ ପିତୃବ୍ୟ ବଳରାମ ସିଂ ଧରାପଡି ଆଜୀବନ କାରାଦଣ୍ଡରେ ଦଣ୍ଡିତ ହେଲେ। ୧୮୬୨ ସାଲ୍ ଜାନୁଆରୀ ୧୭ ତାରିଖ ବେଳକୁ ବାମଣ୍ଡାର ରାଜା ଥିଲେ ବ୍ରଜସୁନ୍ଦର ତ୍ରିଭୁବନ ଦେବ। ରାଜା ଇଂରେଜ ସରକାରଙ୍କୁ ସମ୍ବାଦ ଦେଲେ ଯେ ତାଙ୍କ ଅଧୀନସ୍ଥ ଜମିଦାର ଶ୍ରୀକୃଷ୍ଣ ବେହେରା ବିଦ୍ରୋହରେ ଯୋଗ ଦେଇଛନ୍ତି ଓ ବିଦ୍ରୋହୀ ମାନଙ୍କୁ ସାହାଯ୍ୟ କରୁଛନ୍ତି। କିନ୍ତୁ ଶାସକ କକ୍ ବର୍ଣ୍ଣ ଏକଥା ବିଶ୍ୱାସ ନକରି ରାଜାଙ୍କ କାର୍ଯ୍ୟକଳାପ ପ୍ରତି ସନ୍ଦେହ କଲେ ଏବଂ ରାଜାଙ୍କୁ ସତର୍କ କରି ଜଣାଇ ଦେଲେ ଯେ ଅନୁଗୁଳ ରାଜାଙ୍କ ପରି ତାଙ୍କୁ ବନ୍ଦୀ କରିବା ସହ ବାମଣ୍ଡାକୁ 'ଖାସ୍ ମାହାଲ'ରେ ପରିଣତ କରାଯିବ।[୧୩] ଏହାପରେ ବାମଣ୍ଡା ରାଜା ଓ ଅଧୀନସ୍ଥ କନ୍ଧ ଜମିଦାର ଗଣ ଇଂରେଜ ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବାରୁ ବାମଣ୍ଡା ରାଜ୍ୟ ବିଦ୍ରୋହୀ ମାନଙ୍କ ଦ୍ୱାରା ବାରମ୍ବାର ଆକ୍ରମିତ ହୋଇଥିଲା। ରାଜା ବିଦ୍ରୋହୀ ମାନଙ୍କୁ ଦମନ କରିବା ପାଇଁ ଇଂରେଜ ସରକାରଙ୍କ ସାହାଯ୍ୟ ଲୋଡିଥିଲେ। ଯଦିଓ ମେଜର ଇମ୍ପେଙ୍କ ସାହାଯ୍ୟ ନଗଣ୍ୟ ଥିଲା, ସେ ଅନ୍ୟରାଜ୍ୟର ରାଜାମାନଙ୍କୁ ଜଣାଇ ଦେଲେ ଯେ ବାମଣ୍ଡା ରାଜା ଇଂରେଜ ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିଛନ୍ତି। ସେତେବେଳେ ଗାଙ୍ଗପୁର ରାଜା ବ୍ରିଟିଶ୍ ସରକାରଙ୍କ ସପକ୍ଷରେ ଥିଲେ। ବାମଣ୍ଡା ଓ ଗାଙ୍ଗପୁର ରାଜାଙ୍କ ମଧ୍ୟରେ ଘନିଷ୍ଠତା ଥିବା ହେତୁ ଇଂରେଜ ଶାସକ, ସିଂହଭୂମିର ଡେପୁଟି କେପ୍‌ଟେନ୍ ବର୍ଚ୍ଚ ଓ ଛୋଟନାଗପୁର

---

[୧୩] ବୀର ସୁରେନ୍ଦ୍ର ସାଏ - ଶ୍ରୀ ଅନିରୁଦ୍ଧ ଦାଶ - ପୃଷ୍ଠା ୧୬୭

କମିଶନର ବାମଣ୍ଡା ପ୍ରତି ଉଦାର ମନୋଭାବ ପୋଷଣ କରିଥିଲେ। କେପ୍‌ଟେନ୍ ବର୍ଚ୍ଚ ଲେଖିଥିଲେ ଯେ, ବାମଣ୍ଡା ରାଜ ପରିବାର ଇଂରେଜମାନଙ୍କୁ ସହାୟତା କରିବାକୁ ଚାହାନ୍ତି, କିନ୍ତୁ ସେମାନଙ୍କ ପ୍ରତି ସରକାରଙ୍କ ଅବହେଳା ହେତୁ ସେମାନେ ବହୁ ସମସ୍ୟାର ସମ୍ମୁଖୀନ ହୋଇ ଦୁଃଖକଷ୍ଟ ଭୋଗ କରୁଛନ୍ତି। ଏତଦ୍‌ଦ୍ୱାରା, ଏକ ପକ୍ଷରେ ବାମଣ୍ଡାର ଚାଷୀକୁଳ ଦୀନହୀନ ଅବସ୍ଥାରେ ଜୀବନ କାଟୁଛନ୍ତି, ଅନ୍ୟପକ୍ଷରେ ରାଜା ବିଦ୍ରୋହ ଦମନ ପାଇଁ ରାଜକୋଷରୁ ପ୍ରଭୂତ ଅର୍ଥ ଖର୍ଚ୍ଚ କରି ଆର୍ଥିକ ସଙ୍କଟର ସମ୍ମୁଖୀନ ହେଉଛନ୍ତି।

ବାମଣ୍ଡା ରାଜ୍ୟକୁ ବିଦ୍ରୋହୀ ମାନଙ୍କର ବାରମ୍ବାର ଆକ୍ରମଣ ହେବାରୁ ଛୋଟନାଗପୁର କମିଶନର ବିବ୍ରତ ହୋଇ ଏକଥା ବଙ୍ଗଳାର ଛୋଟଲାଟଙ୍କୁ ଜଣାଇଲେ। ଏ ବିଷୟରେ ଛୋଟଲାଟ କଟକ କମିଶନରଙ୍କୁ ଲେଖିଲେ ଯେ ସେ ସମ୍ବଲପୁର ଡେପୁଟି କମିଶନରଙ୍କୁ ନିର୍ଦ୍ଦେଶ ଦିଅନ୍ତୁ ଯେ, ଯେପରି ବାମଣ୍ଡାର ଜମିଦାର ମାନେ ସଂଘବଦ୍ଧ ହୋଇ ବିଦ୍ରୋହୀ ମାନଙ୍କୁ ଆକ୍ରମଣ କରି ବନ୍ଦୀ କରିପାରିବେ। ଇଂରେଜ କେପ୍‌ଟେନ୍ ବର୍ଚ୍ଚ ବଣାଇ ରାଜ୍ୟରେ ଲୋକନାଥ ମହାନ୍ତି ନାମକ ଜଣେ ବ୍ୟକ୍ତିଙ୍କୁ ସ୍ଥାନୀୟ ପ୍ରତିନିଧି ରୂପେ ନିଯୁକ୍ତ କରିଥିଲେ। ବିଦ୍ରୋହୀ ମାନେ ଗାଙ୍ଗପୁର ଓ ବାମଣ୍ଡା ସୀମାବର୍ତ୍ତୀ 'ସଗରା' ଗ୍ରାମରେ ଏକତ୍ରିତ ହୋଇ ସରକାରୀ ସପକ୍ଷର ଲୋକଙ୍କୁ ହତ୍ୟା ଓ ସେମାନଙ୍କ ସମ୍ପତ୍ତି ଲୁଟ କରିବାକୁ ଧମକ ଦେବାରୁ ଏ ସମ୍ବାଦ ଶ୍ରୀ ଲୋକନାଥ ମହାନ୍ତି କେପ୍‌ଟେନ୍ ବର୍ଚ୍ଚଙ୍କୁ ଜଣାଇଲେ। କେପ୍‌ଟେନ୍ ବର୍ଚ୍ଚ ବିଦ୍ରୋହୀ ମାନଙ୍କୁ ଦମନ କରିବା ପାଇଁ ବଙ୍ଗଳା ପୋଲିସ୍ ବେଟେଲିଏନ୍‌ର ଦଳେ ସୈନ୍ୟଙ୍କୁ ପଠାଇଲେ।

ଏତିକିବେଳକୁ ପୁଣି ବାମଣ୍ଡା ରାଜା ସମ୍ବଲପୁର କର୍ତ୍ତୃପକ୍ଷଙ୍କ ସୁଦୃଷ୍ଟିରେ ନଥିଲେ କାରଣ ରାଜାଙ୍କ ସୈନ୍ୟବାହିନୀ ଖାଲ୍‌ସା ଅଞ୍ଚଳରେ ତିନିଥର ଲୁଟ୍‌ପାଟ୍ କରିଥିଲେ। ଏ ବିଷୟ ସମ୍ବଲପୁରର ପ୍ରଧାନ ସହକାରୀ କମିଶନର୍ ଜେ. ସ୍ମିଥ୍ କଟକ କମିଶନରଙ୍କୁ ଜଣାଇଲେ। କଟକ କମିଶନର ମତ ଦେଲେ ଯେ ବାମଣ୍ଡା ରାଜା ନିଜର ସୈନ୍ୟବାହିନୀଙ୍କୁ ନିୟନ୍ତ୍ରଣ କରିବାକୁ ସକ୍ଷମ ନୁହନ୍ତି। ଏଣୁ ଏକ ପୋଲିସ୍ ସୈନ୍ୟବାହିନୀ ଗଠନ କଲେ ପାଇକ ମାନଙ୍କୁ ଦମନ କରାଯାଇପାରିବ। ଏହା ପରେ ପରେ ବାମଣ୍ଡା ଇଂରେଜମାନଙ୍କ ଶାସନାଧୀନ ହେଲା।

## ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ

ପୂର୍ବତନ ଶାସକମାନଙ୍କୁ କ୍ଷମତାଚ୍ୟୁତ କରିବାପାଇଁ ଇଂରେଜ ସରକାର ବିଭିନ୍ନ କୌଶଳ ଅବଲମ୍ବନ କଲେ ଏବଂ ୧୮୧୭ ଖ୍ରୀ:ରେ ସମ୍ବଲପୁର ଦଖଲ କଲେ। ୧୮୧୭ରୁ ୧୮୪୯ ସାଲ୍ ଯାଏ ନାମକୁ ମାତ୍ର ସମ୍ବଲପୁରରେ ରାଜାଙ୍କ ଶାସନ ଚାଲିଲା। ୧୮୪୯ ସାଲ୍ ସେପ୍ଟେମ୍ବର ୧୦ ତାରିଖ ଦିନ ରାଜା ନାରାୟଣ ସିଂହଙ୍କ ଦେହାନ୍ତ ହେବାରୁ ସମ୍ବଲପୁରରେ ଇଂରେଜ ଶାସନର ଭିତ୍ତି ଦୃଢ଼ୀଭୂତ ହେଲା। ଯଦିଓ ୧୮୨୧ ସାଲ୍‌ରେ ଗଡଜାତ ରାଜାମାନଙ୍କୁ ସ୍ୱତନ୍ତ୍ର ସନନ୍ଦ ଦିଅଗଲା, ତଥାପି ସେମାନଙ୍କ ଶାସନ ମୁଖ୍ୟ ରୂପେ ରହିଲେ ସମ୍ବଲପୁରରେ ଅବସ୍ଥାପିତ ଜଣେ ଇଂରେଜ ଶାସକ। ଗଡଜାତ ପ୍ରଜାଗଣଙ୍କୁ ରାଜାଙ୍କୁ ଦେୟ ପରିମାଣର ଖଜଣା ଇଂରେଜ ସରକାରଙ୍କୁ ମଧ୍ୟ ଦେବାକୁ କୁହାଗଲା। ଇଂରେଜ ଶାସକ ପ୍ରଜାଙ୍କ ସ୍ୱାର୍ଥକୁ ସଂପୂର୍ଣ୍ଣ ରୂପେ ଉପେକ୍ଷା କରି ରାଜାମାନଙ୍କ ସ୍ୱାର୍ଥପ୍ରତି ପ୍ରାଧାନ୍ୟ ଦେଲେ। ରାଜାମାନଙ୍କ ବିରୁଦ୍ଧରେ ପ୍ରଜାଗଣ ବିଦ୍ରୋହ କଲେ ତାକୁ ଦମନ କରିବାକୁ ବ୍ରିଟିଶ ସରକାର ରାଜାମାନଙ୍କୁ ସାହାଯ୍ୟ କଲେ। ଏହା ଫଳରେ, ରାଜାମାନେ ନିଜ ରାଜ୍ୟରେ ଏକଛତ୍ର ବାଦ ଶାସନ ଚଳାଇଲେ। ବାମଣ୍ଡା ଇଂରେଜ ସରକାରଙ୍କ କରଦରାଜ୍ୟ ରୂପେ ଗଣା ହେବା ପରେ ଏ ରାଜ୍ୟକୁ ରାଞ୍ଚିରେ ଅବସ୍ଥାପିତ ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟର ଅଧୀନରେ ରଖାଗଲା। ସମ୍ବଲପୁର ଭାଷା ଆନ୍ଦୋଳନ ପରେ ୧୯୦୫ ସାଲ୍‌ରେ ବାମଣ୍ଡା କେନ୍ଦ୍ର ପ୍ରଦେଶରୁ ଅଣାଯାଇ ଓଡ଼ିଶା ଡିଭିଜନ୍‌ରେ ମିଶାଗଲା। ଏହାର ଶାସନ ଦାୟିତ୍ୱରେ ରହିଲେ ଜଣେ ପଲିଟିକେଲ୍ ଏଜେଣ୍ଟ ଓ ତାଙ୍କ କାର୍ଯ୍ୟାଳୟ ରହିଲା ସମ୍ବଲପୁରରେ। ପୁଣି ଓଡ଼ିଶାର ୨୬ଟି ଗଡଜାତକୁ ୧୯୩୩ ସାଲ୍‌ରେ ନୂତନ ରୂପେ ଗଠିତ ଇଷ୍ଟର୍ଣ୍ଣଷ୍ଟେଟ୍ ଏଜେନ୍ସିର ଅନ୍ତର୍ଭୁକ୍ତ କରାଗଲା। ରାଜ୍ୟର ଶାସନ ଓ ସ୍ଥିତିକୁ ନେଇ ରାଜ୍ୟମାନଙ୍କୁ ଚାରୋଟି ଶ୍ରେଣୀରେ ବିଭକ୍ତ କରାଗଲା। ବାମଣ୍ଡା ଏକ 'କ' ଶ୍ରେଣୀୟ ରାଜ୍ୟର ପଦମର୍ଯ୍ୟାଦା ପାଇଲା।

## ଶାସନ ଓ ବ୍ୟକ୍ତିଗତ ସ୍ୱାଧୀନତା

ଯଦିଓ ରାଜାଗଣ ରାଜ୍ୟର ଭୌତିକ ବିକାଶ ପାଇଁ ଅନେକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଥିଲେ, କିନ୍ତୁ ରାଜ୍ୟର ପ୍ରଜାଗଣଙ୍କ ବ୍ୟକ୍ତିଗତ ସ୍ୱାଧୀନତା ନଥିଲା। ଯେଉଁ ଶାସନ

ବ୍ୟବସ୍ଥାରେ ବ୍ୟକ୍ତିଗତ ସ୍ୱାଧୀନତା ନଥାଏ, ସେଠାରେ ବ୍ୟକ୍ତିର ବୌଦ୍ଧିକ ଓ ଆତ୍ମିକ ବିକାଶ ସମ୍ଭବ ନୁହେଁ। ରାଜ୍ୟରେ ନିୟମ ଥିଲା ଯେ ଜଣେ ମେଧାବୀ ଛାତ୍ର ଦରବାରର ବିନା ଅନୁମତିରେ ଉଚ୍ଚଶିକ୍ଷା ପାଇଁ ବାହାରକୁ ସ୍ୱଇଚ୍ଛାରେ ଯାଇ ପାରିବେ ନାହିଁ। ବାମଣ୍ଡାରେ ଉଚ୍ଚଶିକ୍ଷା ପାଇଁ ସରକାରଙ୍କ ତରଫରୁ ବୃତ୍ତି ବ୍ୟବସ୍ଥାର ନିୟମ ଥିଲା ଯେ ଶିକ୍ଷା ସମାପ୍ତି ପରେ ବୃତ୍ତିଧାରୀ ରାଜ୍ୟରେ ଚାକିରି କରିବା ପାଇଁ ବାଧ୍ୟ। କୌଣସି ଘରକୁ ଅତିଥି ଆସିଲେ ତାଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରାଯାଇ ଗାଁ ଚୌକିଦାର ଥାନାରେ ରିପୋର୍ଟ କରୁଥିଲେ ଏବଂ ସେଥିପାଇଁ ଥାନାରେ ପ୍ରତ୍ୟେକ ଗାଁ ନିମନ୍ତେ ଗୋଟିଏ ଗୋଟିଏ ରେଜିଷ୍ଟର ରହୁଥିଲା। ଅତିଥିଙ୍କ ସମ୍ବନ୍ଧରେ କୌଣସି ସନ୍ଦେହ ହେଲେ ତାହା ରାଜ ଦରବାରକୁ ଜଣାଇ ଦିଆଯାଉଥିଲା ଏବଂ ଉପରିସ୍ଥ ହାକିମଙ୍କ ଦ୍ୱାରା ଅନୁସନ୍ଧାନ କରାଯାଉଥିଲା। ଏପରିକି କେହି ଭଲ ଘରଟିଏ ତିଆରି କଲେ ବା ଭଲ ପୋଷାକ ପିନ୍ଧିଲେ ତାଙ୍କ ଉପରେ ଶାସନର କୋପଦୃଷ୍ଟି ପଡୁଥିଲା।

ଇଂରେଜ ସରକାରଙ୍କ ଗଡଜାତ ରାଜାମାନଙ୍କ ଶାସନ ପ୍ରତି ଉଦାସୀନତା ତଥା ରାଜାମାନଙ୍କ ମନମୁଖି ଶାସନ ବିରୁଦ୍ଧରେ ଜନଜାଗରଣ ଦେଖାଗଲା। ସେତେବେଳେ ସଂଗ୍ରାମୀ ଦୟାନନ୍ଦ ଶତପଥି କୁଚିଣ୍ଡା ସବ୍‌ଡିଭିଜନ ଅନ୍ତର୍ଗତ ପାରୁଆଭାଡି ଗ୍ରାମରେ ପ୍ରାଥମିକ ସ୍କୁଲରେ ହେଡପଣ୍ଡିତ ରୂପେ ନିଯୁକ୍ତି ପାଇଥାନ୍ତି। ଯଦିଓ ସେତେବେଳେ ହେଡ ପଣ୍ଡିତ ମାନଙ୍କ ଦରମା ଥିଲା ପାଞ୍ଚ ଟଙ୍କା, ଗଡଜାତ ସମୂହର ଏଜେନ୍ସି, ଇନ୍‌ସପେକ୍ଟର ମି.ଏଚ୍.ଡି.ପି. ସାହେବ ଦୟାନନ୍ଦଙ୍କ ସ୍କୁଲ ପରିଦର୍ଶନ କରି ତାଙ୍କ ଶିକ୍ଷାଦାନରେ ସନ୍ତୁଷ୍ଟ ହୋଇ ଦରମା ପାଞ୍ଚ ଟଙ୍କାରୁ ବାରଟଙ୍କାକୁ ବୃଦ୍ଧି କଲେ ଓ ଦଶ ଟଙ୍କା ପୁରସ୍କାର ଦେଲେ ଏବଂ ଦୟାନନ୍ଦଙ୍କ ଶିକ୍ଷାଦାନର ଦକ୍ଷତା ଦେଖି ତାଙ୍କୁ କୁଚିଣ୍ଡାର ମିଡିଲ୍ ଭର୍ଣ୍ଣାକୁଲାର ସ୍କୁଲର ସହକାରୀ ଶିକ୍ଷକ ପଦକୁ ପ୍ରମୋଶନ ଦେଲେ। ଏହାଫଳରେ, ଦୟାନନ୍ଦ ବାହ୍ୟଜଗତ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଅଧିକ ସୁଯୋଗ ପାଇଲେ। ସେତେବେଳେ କୁଚିଣ୍ଡାର ଏମ୍.ଭି ସ୍କୁଲରେ ଶିକ୍ଷକତା କରୁଥିବା ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର ନୀଳମଣି ମହାପାତ୍ରଙ୍କ ସଂପର୍କରେ ଆସି ତାଙ୍କଠାରୁ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ ଅନେକ ବିଷୟ ଜାଣିବାକୁ ପାଇଲେ। ଏହାପରେ ଦୟାନନ୍ଦ ଭାରତର ସ୍ୱାଧୀନତା ସଂଗ୍ରାମର ଅଗ୍ରଗତି ଉପରେ ନିୟମିତ ଲକ୍ଷ୍ୟ କରିବା ଫଳରେ ତାଙ୍କର ରାଜନୈତିକ ଚିନ୍ତାଧାରାର ବିକାଶ ଘଟିଲା ଏବଂ

ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାର ପ୍ରବୃତ୍ତି ପ୍ରଖର ରୂପ ଧାରଣ କଲା । ୧୮୨୮ ସାଲ୍‌ରେ ରାଜ୍ୟ ଶାସନର ଅତ୍ୟାଚାର ସହ୍ୟ କରିନପାରି ରାଜ୍ୟରେ ଘଟୁଥିବା ଘଟଣାବଳୀକୁ ବ୍ରହ୍ମପୁରରେ ପ୍ରକାଶିତ ସାପ୍ତାହିକୀ ପତ୍ରିକା 'ଆଶା'ରେ ପ୍ରକାଶ ପାଇଁ ପଠାଇଲେ । ଏ ସମ୍ବାଦ 'ଆଶା' ସମ୍ବାଦପତ୍ରରେ ପ୍ରକାଶ ପାଇବାରୁ ଇଂରେଜ ସରକାର ତଥା ଦେଶର ସଂଗ୍ରାମୀ ଗଣ ବାମଣ୍ଡାର ଅତ୍ୟାଚାର ବିଷୟରେ ଅବଗତ ହେଲେ । ଏ ସମ୍ବାଦକୁ କେନ୍ଦ୍ରକରି ତତ୍କାଳୀନ ଭାରତୀୟ ଏସେମ୍ଲିର ସଭ୍ୟ ଭୁବନାନନ୍ଦ ଦାସ ଏସେମ୍ଲିରେ ପ୍ରଶ୍ନ ଉତ୍‌ଥାପନ କଲେ । ସରକାରଙ୍କ ତରଫରୁ ଏ ଘଟଣାର ଅନୁସନ୍ଧାନ ହେଲା । ରାଜଦରବାରର ଉଚ୍ଚ ପଦସ୍ଥ କର୍ମଚାରୀ ମାନଙ୍କ ଏକ ବୈଠକ ବସି ଏ ସମ୍ବାଦ ଉପରେ ବିଚାର ବିମର୍ଶ ପରେ ଦୟାନନ୍ଦଙ୍କୁ ଡକାଗଲା । ଦୟାନନ୍ଦ ଏ ସମ୍ବାଦ 'ଆଶା' ପତ୍ରିକାରେ ପ୍ରକାଶ କରିଥିବା କଥା ନିର୍ଭୀକ ଭାବରେ ସ୍ୱୀକାର କଲେ । ଏହାପରେ ଦୟାନନ୍ଦଙ୍କୁ ରାଜଦ୍ରୋହୀ ବୋଲି ଘୋଷଣା କରି ରାଜ୍ୟରୁ ବିତାଡିତ କରାଯିବା ସହ ତାଙ୍କର ସ୍ଥାବର, ଅସ୍ଥାବର ସଂପତ୍ତି ବ୍ୟାଜାପ୍ତ ହେଲା । ଦୟାନନ୍ଦଙ୍କୁ ତିନିଘଣ୍ଟା ମଧ୍ୟରେ ବାମଣ୍ଡା ରାଜ୍ୟର ସୀମା ବାହାରକୁ ଚାଲିଯିବାକୁ ଦରବାରରୁ ଆଦେଶ ହେଲା । ସେ ଏଥିରେ ଆଦୌ ବିଚଳିତ ନହୋଇ ଜ୍ୟେଷ୍ଠ ମାସର ଉତ୍ତପ୍ତ ମଧ୍ୟାହ୍ନରେ କୁଚିଣ୍ଡା କଚେରୀରୁ ସିଧା ଚାଲିଲେ ସମ୍ବଲପୁର ଅଭିମୁଖେ । ବାଟରେ ଗାଁ ମାନଙ୍କ କଂଗ୍ରେସ କର୍ମୀମାନେ ରହିବାକୁ ଯେତେ ଅନୁରୋଧ କଲେ ମଧ୍ୟ ସେ ତତ୍‌ପ୍ରତି କର୍ଣ୍ଣପାତ ନକରି ହିଂସଜନ୍ତୁ ବହୁଳ ଘନ ଅରଣ୍ୟ ମଧ୍ୟରେ ଏକାକୀ ଚାଲି ଚାଲି ଯାଇ ପରଦିନ ସକାଳେ ପହଞ୍ଚିଲେ ସମ୍ବଲପୁର ସହରରେ ।

ଯଦିଓ ବାମଣ୍ଡାରେ ପୂର୍ବରୁ କରବୃଦ୍ଧି ବିରୁଦ୍ଧରେ ଚାରିଥର ଜନ ଅସନ୍ତୋଷ ତଥା ଆନ୍ଦୋଳନ ହୋଇଥିଲା । ଏହି ଚାରୋଟି ଆନ୍ଦୋଳନ ହୋଇଥିଲା ୧୯୦୮ ରୁ ୧୯୨୮ ମଧ୍ୟରେ । ସେଥିରେ ନେତୃତ୍ୱ ନେଇଥିଲେ ଯଥାକ୍ରମେ ହର ପ୍ରଧାନ, ଭାଗବତ ପ୍ରଧାନ, ଜଗନ୍ନାଥ ଗଡ଼ନାୟକ ଓ ଦଇତାରୀ ହୋତା । ଜନଆନ୍ଦୋଳନ ଉଗ୍ର ରୂପ ଧାରଣ କଲା ୧୯୨୯ ସାଲ୍‌ରେ । ଇଂରେଜ ଶାସକ ଏଚ୍.ମେକଫରସନ୍‌ଙ୍କ ଦ୍ୱାରା ବାମଣ୍ଡାର ଭୂବନ୍ଦୋବସ୍ତ କାର୍ଯ୍ୟ ଶେଷ ହୋଇଥାଏ । ଏହି ନୂତନ ଭୂବନ୍ଦୋବସ୍ତ ପରେ ଜମିର ଖଜଣା ଚାରିଗୁଣ ବଢ଼ିଲା । ଓ୍ୱେଲ୍‌ସର୍‌ଦର ଜମିର ଖଜଣା ହେଲା

ଏକର ପିଛା ତିନିଟଙ୍କା ପଚାଶ ପଇସା । ସେତେବେଳେ ଚାଉଳ ଦର ଥିଲା ବାଲେଶ୍ୱରୀ ସେରରେ ଟଙ୍କାକୁ ୩୨ ସେର ଏବଂ ଧାନ ଟଙ୍କାକୁ ବର୍ତ୍ତମାନର ହିସାବରେ ଦୁଇ କୁଇଣ୍ଟାଲ । ୧୯୨୯ ସାଲ୍ ବେଳକୁ ଚାଷୀମାନଙ୍କ ଉନ୍ନତ ଧରଣର କୃଷି ପ୍ରଣାଳୀ ସମ୍ବନ୍ଧରେ ଧାରଣା ନଥିଲା । ଆବହମାନ କାଳରୁ ପ୍ରଚଳିତ ପ୍ରଣାଳୀରେ ସେମାନେ ଧାନ ଚାଷ କରୁଥିଲେ । ଫଳରେ ଜମିର ଉତ୍ପାଦନରୁ ଚଳିବା ସେମାନଙ୍କ ପକ୍ଷେ ଅତ୍ୟନ୍ତ କଷ୍ଟକର ଥିଲା । ଏଣୁ ଏହି ଖଜଣା ଓ କରବୃଦ୍ଧି ସେମାନଙ୍କ ପାଇଁ ହେଲା 'ବୋଝ ଉପରେ ନଳିତା ବିଡା' । ଖଜଣା ଓ କର ଉପରେ ବିଭିନ୍ନ ପ୍ରକାର 'ବେଠି' ଓ 'ବେଗାଡି' ପାଇଁ ମଧ୍ୟ ନିର୍ଦ୍ଦେଶ ଥିଲା ଯାହାକି ଅନ୍ୟତ୍ର ଦର୍ଶାଯାଇଛି ।

ରାଜସ୍ୱ ବୃଦ୍ଧିର ପ୍ରତିବାଦ କରି ଏହାର ପୁନର୍ବିଚାର କରିବା ନିମନ୍ତେ ପ୍ରାୟ ତିନିହଜାର ଚାଷୀ ସେମାନଙ୍କ ନେତୃବୃନ୍ଦ ସହ ପଲିଟିକେଲ ଏଜେଣ୍ଟଙ୍କୁ ସାକ୍ଷାତ କରିବା ପାଇଁ ସମ୍ବଲପୁର ଗଲେ । ସମ୍ବଲପୁରରେ ଦୁଇଦିନ ଅପେକ୍ଷା କରି ମଧ୍ୟ ସେମାନଙ୍କର ପଲିଟିକେଲ୍ ଏଜେଣ୍ଟଙ୍କ ସହ ସାକ୍ଷାତ୍ ହୋଇ ପାରିଲା ନାହିଁ । ଏହାକୁ ଭଣ୍ଡୁର କରିବା ପାଇଁ ବାମଣ୍ଡାର ରାଜ ସରକାର ଚକ୍ରାନ୍ତ କଲେ ଏବଂ ରାଜା ନିଜର ସମର୍ଥକ ମାନଙ୍କୁ ସମ୍ବଲପୁର ପଠାଇ ପ୍ରଚାର କଲେ ଯେ ଯଦି ପ୍ରଜାଗଣ ସମ୍ବଲପୁରରେ ବେଶୀଦିନ ରହନ୍ତି, ତେବେ ସେମାନଙ୍କ ଉପରେ ଗୁଳି ଚଳାଇବା ପାଇଁ ସରକାର ମସୁଧା କରୁଛନ୍ତି । ଏ ସମ୍ବାଦ ଶୁଣି ପ୍ରଜାକୁଳ ଭୟଭୀତ ହୋଇ ବାମଣ୍ଡାକୁ ଫେରି ଆସିଲେ ।

୧୯୩୦ ସାଲ୍‌ରେ ଅନାବୃଷ୍ଟି ଯୋଗୁଁ ରାଜ୍ୟରେ ପୁଣି ମରୁଡି ହେଲା । ଚାଷୀ କୁଳ ଅନାଟନ ଯୋଗୁଁ ଭୋକ ଉପାସରେ ରହିଲେ । ରାଜ୍ୟସରକାର ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ନ ବୁଝି ଜୋରଜବରଦସ୍ତି ଖଜଣା ଅସୁଲ କଲେ । ଅମଳ କରିଥିବା ଧାନର ଯାହା କିଛି ବାକି ରହିଲା ତାକୁ ରାଜ୍ୟ ମଧ୍ୟରେ ବସବାସ କରୁଥିବା କିଣିଖିଆ ମାନଙ୍କୁ ଶସ୍ତାରେ ବିକ୍ରୟ କରିବାକୁ ଚାଷୀମାନଙ୍କୁ ବାଧ୍ୟ କରାଗଲା । ସେତିକିବେଳକୁ ରାଜ୍ୟ ବାହାରେ ଚାଉଳଦର ଟଙ୍କାକୁ ଆଠ ସେର ଥିବାବେଳେ ରାଜ୍ୟଭିତରେ ଥିଲା ଟଙ୍କାକୁ ୩୨ ସେର । ରାଜ୍ୟ ବାହାରକୁ ଚାଉଳ ନଯିବାପାଇଁ ସରକାର ସୀମାରେ ଅବକାରୀ ଓ ପୋଲିସ୍ ବିଭାଗ କର୍ମଚାରୀଙ୍କୁ ମୁତୟନ କଲେ ।

୧୯୩୧ ସାଲ୍‌ରେ ଖଜଣା ଅସୁଲ କରି ଖଜଣା ଖାନାରେ ଜମାକରି ନ ପାରିବାରୁ କୁଚିଣ୍ଡା ସବ୍‌ଡିଭିଜନ୍‌ର ଆଠଜଣ ଗୌନ୍ତିଆଙ୍କୁ ଧରି ଆଣି ନାଜିର ବେଢ଼ାରେ ରଖାଗଲା ଏବଂ ସେମାନଙ୍କୁ ଖାଇବାକୁ ଦିଆଗଲା ନାହିଁ। ଗୌନ୍ତିଆମାନଙ୍କୁ ଭୋଗରା ଜମିରୁ ବେଦଖଲ କରି ଅନ୍ୟ ଜଣଙ୍କୁ ଗୌନ୍ତି ଦାୟିତ୍ୱ ଦିଆଗଲା ଏବଂ ସେ ଭୋଗରା ଜମିକୁ ଭୋଗ ଦଖଲ କଲେ। ଗ୍ରାମର ଖଜଣା ଦାଖଲ ନ କରି ପାରିବାରୁ ଗୌନ୍ତିଆଙ୍କ ଅସ୍ଥାବର ସମ୍ପତ୍ତି ଜବତ କରାଗଲା। ଏହି ଗୌନ୍ତିଆ ମାନେ ହେଲେ ପାରୁଆଭାଡିର ଅର୍ଜୁନମୋହନ ଗୌନ୍ତିଆ, ମହୁଲପାଲିର ରାଇସିଂ ଗୌନ୍ତିଆ ଓ ହରିଚନ୍ଦନ ଗୌନ୍ତିଆ, ସାତକମାର ଗୋବର୍ଦ୍ଧନ ଗୌନ୍ତିଆ, କୁସୁମୀ - ଜମନକିରାର ରୂପଧର ଗୌନ୍ତିଆ ଓ ସପ୍ନେଶ୍ୱର ଗୌନ୍ତିଆ, ଲାଡର ବୃନ୍ଦାବନ ଗୌନ୍ତିଆ ଓ ରାମତିଲେଇମାଳର ହରିରାମ ଗୌନ୍ତିଆ। ରାଜ୍ୟ ସରକାରଙ୍କ ଏହି କାର୍ଯ୍ୟକଳାପର ପ୍ରତିବାଦ କରାଗଲା ଦୟାନନ୍ଦ ଶତପଥିଙ୍କ ନେତୃତ୍ୱରେ। ସମସ୍ତ ଘଟଣାକୁ ସେ ଟେଲିଗ୍ରାମ୍ ଯୋଗେ ବିହାର-ଓଡ଼ିଶା ଗଭର୍ଣ୍ଣରଙ୍କୁ ଜଣାଇଲେ ଏବଂ ଦୟାନନ୍ଦ ଏ ସମ୍ବାଦକୁ ଦୈନିକ 'ଆଶା' ସମ୍ବାଦପତ୍ରକୁ ପଠାଇଲେ। ଶ୍ରୀ ଦାଶରଥି ମିଶ୍ର ଓ ଶ୍ରୀ ପଦ୍ମନାଭ ପଣ୍ଡା ସରକାରୀ କର୍ମଚାରୀ ଥାଇ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେବାରୁ ରାଜଦ୍ରୋହ ଅଭିଯୋଗରେ ସେମାନଙ୍କୁ ଚାକିରିରୁ ବରଖାସ୍ତ କରିବା ସହ ସେମାନଙ୍କ ଜମା ଥିବା ପ୍ରୋଭିଡେଣ୍ଟ ଫଣ୍ଡକୁ ବ୍ୟାଜାପ୍ତ କରାଗଲା।

୧୯୩୭ ସାଲ୍ ଜୁନ୍ ୨୩ ତାରିଖରେ ଡକ୍ଟର ପଟ୍ଟାଭି ସୀତାରାମାୟା ନେତୃତ୍ୱରେ 'ଓଡ଼ିଶା ରାଜ୍ୟ ସମ୍ମିଳନୀ'ର ଏକ ବୈଠକ କଟକଠାରେ ବସି ଗଡ଼ଜାତମାନଙ୍କରେ କଂଗ୍ରେସ କମିଟି ଗଢ଼ିବାକୁ ଜନସାଧାରଣଙ୍କୁ ପ୍ରବର୍ତ୍ତାଗଲା। ଏହି ସମ୍ମିଳନୀ ରାଜ୍ୟର ରାଜାମାନଙ୍କୁ ବେଠି, ବେପାରୀ ଆଦି ଉଠାଇଦେବାକୁ ଦାବୀ କଲା। ଏହି ସମ୍ମିଳନୀ ସତୀଶଚନ୍ଦ୍ର ବୋଷ, ବଳବନ୍ତରାଏ ମେହେଟ୍ଟା, ବ୍ରଜସୁନ୍ଦର ଦାସଙ୍କୁ ନେଇ ଏକ କମିଟୀ ନିଯୁକ୍ତ କଲା ଏବଂ ଶ୍ରୀ ସାରଙ୍ଗଧର ଦାସ ଏହାର ଆବାହକ ରହିଲେ। ୧୯୩୭ ଜୁଲାଇ ମାସରେ ଓଡ଼ିଶାରେ ଲୋକପ୍ରିୟ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ହେବାରୁ ଜନସାଧାରଣଙ୍କ ମନରେ ନବ ଜାଗରଣ ସୃଷ୍ଟିହେଲା। ୧୯୩୮ ସାଲରେ ଗଡ଼ଜାତମାନଙ୍କର 'ପ୍ରଜାମଣ୍ଡଳ'ମାନ ଗଢ଼ିଉଠିଲା ଏବଂ ପ୍ରଜା ଆନ୍ଦୋଳନ ତୀବ୍ରତର ହୋଇ କର୍ମୀଗଣ ରାଜାମାନଙ୍କ ନିକଟରେ ସେମାନଙ୍କ ସାମାଜିକ ଅଧିକାରମାନ

ଉପସ୍ଥାପନ କଲେ। ଏହି କମିଟୀର ପରାମର୍ଶରେ ବାମଣ୍ଡାରେ ପ୍ରଜାମଣ୍ଡଳ ଗଠନର ଦାୟିତ୍ୱରେ ରହିଲେ ଦୟାନନ୍ଦ ଶତପଥି। ଦୟାନନ୍ଦ ବାମଣ୍ଡା ରାଜ୍ୟ ମଧ୍ୟରେ ରହି ପାରୁନଥିବା ଯୋଗୁଁ ବାମଣ୍ଡା ପ୍ରଜାମଣ୍ଡଳ ଗଠନର ଦାୟିତ୍ୱ ଦେଲେ ଦୟାନିଧି ପାଣିଗ୍ରାହୀଙ୍କୁ। ୧୯୩୭ରେ ବାମଣ୍ଡାର ଦେବଗଡ ସବ୍‌ଡିଭିଜନରେ ମଧ୍ୟ ପ୍ରଜାମଣ୍ଡଳ ଗଠନ କରାଯାଇ ଆନ୍ଦୋଳନ ଚାଲିଲା। ଅନୁଗୁଳର ଦୁଇଜଣ କଂଗ୍ରେସ କର୍ମୀ ଜଟିଆ ସାହୁ ଓ ଡମ୍ବରୁଧର ଗଡନାୟକ ଅନୁଗୁଳ ସୀମାବର୍ତ୍ତୀ ବାମଣ୍ଡାର ଗ୍ରାମ ମାନଙ୍କ ମଧ୍ୟକୁ ଆସି କରଲଗା, ଟିଙ୍କବୀର, ଗମ୍ଭାରୀପାଳ, ତାଳବାହାଲି, ମେଦିନୀପୁର, କାଦୋପଡା, ଆଡସ୍ ଓ ସଂଘାପଶି ଆଦି ଗ୍ରାମମାନଙ୍କୁ ଆସି ପ୍ରାୟ ୨୩ ଜଣ ବ୍ୟକ୍ତିଙ୍କୁ କଂଗ୍ରେସ ଦଳର ସଭ୍ୟଭୁକ୍ତ କଲେ। ରିଆମାଳ ଥାନା ଏ ସମ୍ବାଦ ପାଇ ମେଦିନୀପୁରର ଅଫିସର ମାନଗୋବିନ୍ଦ ଦାସ, ତାଳବାହାଲିର ସହଦେବ ସାହୁ, ଟିଙ୍କବୀରର ବିଲ ନାୟକ, କରଲଗାର କାର୍ତ୍ତିକିଆ ବେହେରା ଓ ନେତ୍ରାନନ୍ଦ ବେହେରା, ବୁଢ଼ାପାଳର କନ୍ଦର୍ପ ପ୍ରଧାନଙ୍କୁ ଥାନାକୁ ଡକାଇ ନେଇ ନିର୍ଧୁମ ମାଡ ଦେଲେ। ବାମଣ୍ଡା ରାଜ୍ୟ ଭିତରେ କଂଗ୍ରେସ ପ୍ରଚାର କଲେ ଜୀବନରେ ମାରିଦେବାକୁ ଧମକ ଦିଆଗଲା। ଏହି କର୍ମୀମାନେ ବାମଣ୍ଡା ରାଜ୍ୟ ଛାଡ଼ି ଅନୁଗୁଳର 'ପାଟକୁମୁଡା' ଗ୍ରାମରେ ଅବସ୍ଥାନ କଲେ ଏବଂ ସେଠାରେ ରହି ସ୍ଥାନୀୟ କର୍ମୀମାନଙ୍କ ସହ ଦେଶର ସ୍ୱାଧୀନତା ଆନ୍ଦୋଳନ ବିଷୟରେ ଆଲୋଚନା କରିବା ସହ ସେମାନଙ୍କ ଠାରୁ ଅନ୍ଦୋଳନ ସଂପର୍କରେ ତାଲିମ ନେଲେ। ଦୁଇ ମାସ ପରେ ସେମାନଙ୍କ ମଧ୍ୟରେ ଏକୋଇଶ ଜଣ ନିଜ ନିଜ ଗ୍ରାମକୁ ଫେରି ଆସିବାରୁ ପୋଲିସ୍ ଖବର ପାଇ ସେମାନଙ୍କୁ ଗିରଫ କଲେ ଏବଂ ବାମଣ୍ଡା ରାଜଧାନୀ ଦେବଗଡକୁ ଆଣିଲେ। ସେମାନଙ୍କ ଅପରାଧ ଉପରେ ବିଚାର ପରେ ପ୍ରତ୍ୟେକଙ୍କୁ ତିନିବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ପାଇଁ ଆଦେଶ ହେଲା। ଦେବଗଡ଼ ସବ୍-ଡ଼ିଭିଜନକୁ ଓଡ଼ିଶାର ବିଶିଷ୍ଟ ନେତା ପବିତ୍ର ମୋହନ ପ୍ରଧାନ ଆସି ପ୍ରଜାମାନଙ୍କୁ ଆନ୍ଦୋଳନରେ ଯୋଗଦେବା ପାଇଁ ପ୍ରବର୍ତ୍ତାଇଲେ। ଖଜୁରିଖମଣର ସୌଭାଗ୍ୟ ମିଶ୍ର ଅଞ୍ଚଳର ସଙ୍ଗଠନ ଦାୟିତ୍ୱ ନେଲେ। ରାଜ୍ୟ ବାହାରକୁ ଚାଲି ଯାଇଥିବା ଦାଶରଥି ମିଶ୍ର ଓ ଦିବାକର ମିଶ୍ର ୧୯୪୬ ସାଲ୍ ଯାଏ 'କୋଶଳା' କେମ୍ପରେ ରହିଥିଲେ। ରାମ ତିଲେଇମାଳର କାଶୀରାମ ଗୌନ୍ତିଆ ଦୟାନନ୍ଦଙ୍କ ସଂସ୍ପର୍ଶରେ ଆସି ସରକାରଙ୍କ

ଚକ୍ଷୁଶୂଳ ହେଲେ । ଅବସ୍ଥା ଏପରି ହେଲା ଯେ ସେ ବାଧ ହୋଇ ରାମତିଲେଇମାଳ ଛାଡ଼ି ଝାରସୁଗୁଡ଼ା ନିକଟସ୍ଥ ଝିର୍ଲାପାଲିରେ ଅବସ୍ଥାନ କଲେ ଏବଂ କଂଗ୍ରେସ କାମ ଜାରି ରଖିଲେ ।

୧ ୯ ୪ ୨ ରେ ଭାରତ ଛାଡ ଆନ୍ଦୋଳନରେ ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ତୀବ୍ରତର ହେଲା । କ୍ରମଶଃ କଂଗ୍ରେସ କର୍ମୀଙ୍କ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିବା କୁଚିଣ୍ଡାର ଦାଶରଥି ମିଶ୍ର, ଗୌରୀଶଙ୍କର ମହାପାତ୍ର, ରାମଚନ୍ଦ୍ର ନାଏକ ପ୍ରମୁଖ ନେତାଙ୍କୁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା ।

୧ ୯ ୪ ୬ରେ ବାମଣ୍ଡାରେ ପ୍ରଜାମଣ୍ଡଳ ଆନ୍ଦୋଳନ ଗୁରୁତର ଆକାର ଧାରଣ କଲା । ପ୍ରତି ଗାଁରେ ଜଣେ ଜଣେ ନେତୃତ୍ୱ ନେଇ ସଭାସମିତି କଲେ । କଟକରୁ ପ୍ରକାଶିତ 'ଗଡଜାତ ତାର' ନାମକ ସମ୍ବାଦପତ୍ରରେ ଅନେକ ଉତ୍ତେଜନାମୂଳକ ସମ୍ବାଦ ପ୍ରକାଶ ପାଉଥିଲା । ତାକୁ ପଢ଼ି ରାଜଶାସନ ବିରୁଦ୍ଧରେ ଲୋକେ ଉଦ୍ବ୍ୟକ୍ତ ହୋଇ ପଡୁଥିଲେ । ସେହି ବର୍ଷ ଦୟାନନ୍ଦ ଶତପଥି ସମ୍ବଲପୁର ଜିଲ୍ଲା କଂଗ୍ରେସ ଅଫିସ୍‌ରେ ପଶ୍ଚିମ ଓଡ଼ିଶା କର୍ମୀ ସମ୍ମିଳନୀ କଲେ । ଏହି ସମ୍ମିଳନୀରେ ବାମଣ୍ଡାର ରତ୍ନାକର ପଟେଲ, ହୃଷିକେଶ ପଟେଲ ଆଦି ସକ୍ରିୟ କର୍ମୀଗଣ ଯୋଗ ଦେଇଥିଲେ । ସେଠାରେ ବାମଣ୍ଡା ଶାସନର ତୀବ୍ର ସମାଲୋଚନା କରାଯାଇ ରାଜତନ୍ତ୍ର ଉଚ୍ଛେଦ ବିନା ପ୍ରଜାଗଣଙ୍କ ସୁଖ ଶାନ୍ତି ଅସମ୍ଭବ ବୋଲି ମତାମତ ପ୍ରକାଶ ପାଇଲା । ସେହିବର୍ଷ କଟକରେ ମହତାବଙ୍କ ନେତୃତ୍ୱରେ ଗଡଜାତ ସମ୍ମିଳନୀ ବସି ରାଜାମାନଙ୍କ ଶାସନବିରୋଧୀ ବହୁପ୍ରସ୍ତାବ ଆଲୋଚନା ହୋଇ ଗୃହୀତ ହେଲା ।

କୁଚିଣ୍ଡା ସବ୍‌ଡିଭିଜନ୍‌ର ଗୁଣନିଧି ଗୌନ୍ତିଆ, ହୃଷିକେଶ ପଟେଲ, ବିଶ୍ୱନାଥ କର, ଚୂଡାମଣି ପଟେଲ, ଗୋପାଳ ପାଣିଗ୍ରାହୀ, ରତ୍ନାକର ପଟେଲ, ପ୍ରଫୁଲ୍ଲ ପଟେଲ, ଦଶରଥ ନାୟକ, ଦୟାନିଧି ପାଣିଗ୍ରାହୀ, ଚନ୍ଦ୍ରଶେଖର ପାଣିଗ୍ରାହୀ, ଭବାନୀଚରଣ ପାଲ, ଚୂଡାମଣି ନାଏକ, ଶରତଚନ୍ଦ୍ର ନାଏକ ଆଦି ବହୁ ସଂଗ୍ରାମୀ ଆନ୍ଦୋଳନକୁ ଆଗେଇ ନେଉଥିବା ବେଳେ ଦେବଗଡ ସବ୍‌ଡିଭିଜନ୍‌ର କୃଷ୍ଣଚନ୍ଦ୍ର ପ୍ରଧାନ, କନ୍ଦର୍ପ ପ୍ରଧାନ, ଦିବାକର ମିଶ୍ର, ମହାଦେବ ପ୍ରଧାନ, ସୌଭାଗ୍ୟ ଚନ୍ଦ୍ର ଦ୍ୱିବେଦୀ, ଗଦାଧର ପ୍ରଧାନ, ବିଶ୍ୱନାଥ ପ୍ରଧାନ, ସୁଦର୍ଶନ ପ୍ରଧାନ, ଡମ୍ବରୁ ଗଡନାୟକ ଆଦି ବହୁ ନେତା ଆନ୍ଦୋଳନକୁ ତୀବ୍ରତର କରିବା ପାଇଁ କ୍ରିୟାଶୀଳ ହୋଇ ଉଠିଲେ । ରକ୍ଷଣଶୀଳା

ନାରୀ ସମାଜ ମଧ୍ୟ ଗୃହର ଅନ୍ଧାର କୋଣରୁ ବାହାରି ଆସି ଆନ୍ଦୋଳନରେ ଯୋଗ ଦେଲେ । ମେନକା ଶତପଥି, ଲବଙ୍ଗଲତା କର ପ୍ରଭୃତି ନାରୀଗଣ ବାମଣ୍ଡାର ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେବା ଫଳରେ ଆନ୍ଦୋଳନ ଅଧିକ ମଜଭୂତ ହେଲା ।

ରାଜଶାସନର ପ୍ରରୋଚନାରେ ରାଜ୍ୟର ପ୍ରାୟ ୧ ୧ ୭ ଜଣ ବାସିନ୍ଦା ବାମଣ୍ଡାରେ ପ୍ରଜାମଣ୍ଡଳ ଅନାବଶ୍ୟକ ବୋଲି ପ୍ରଚାରପତ୍ର ଛାପା କରି ପ୍ରଜାମାନଙ୍କ ମଧ୍ୟରେ ବାଣ୍ଟିଲେ । ସ୍ୱାଧୀନତା ସଂଗ୍ରାମୀ ଦୟାନନ୍ଦ ଶତପଥି ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ କରି ସାଢ଼େ ନଅବର୍ଷ କାଳ କାରାବରଣ କରିଥିଲେ । ଏତଦ୍‌ବ୍ୟତୀତ ଗାନ୍ଧିଜୀଙ୍କ ଗଠନମୂଳକ କାର୍ଯ୍ୟକୁ କାର୍ଯ୍ୟକାରୀ କରିବାପାଇଁ ବାମଣ୍ଡାର ଗ୍ରାମେ ଗ୍ରାମେ 'ବାସୁଦେବ ସେବାଦଳ' ନାମରେ କମିଟି ମାନ ଗଠନ କଲେ । ସେବାଦଳର କାମ ହେଲା ଗ୍ରାମ ସଫେଇ, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ ଆଦି ଗଠନମୂଳକ କାର୍ଯ୍ୟ । ଏହି କାର୍ଯ୍ୟରେ ସହଯୋଗ କରିଥିଲେ କୁଚିଣ୍ଡାର ବାଳମୁକୁନ୍ଦ ରାୟ, ସାହାଜବାହାଲର ଦଶରଥ ନାଏକ, କୁଚିଣ୍ଡାର ଧ୍ରୁବଚରଣ ମହାନ୍ତି, ଅନନ୍ତଚରଣ ମହାନ୍ତି ଓ କୁଲୁଣ୍ଡିର ଲକ୍ଷ୍ମଣ ପୂଜାରୀ ।

ଭାରତର ମୁକ୍ତି ଆନ୍ଦୋଳନ ୧ ୯ ୪ ୨ ସାଲ୍‌ରେ ନୂତନ ରୂପ ନେଇଥିଲା । ଅଗଷ୍ଟମାସରେ ବମ୍ବେ ଠାରେ ଜାତୀୟ କଂଗ୍ରେସର ଏହି ଐତିହାସିକ ଅଧିବେଶନରେ 'ଭାରତଛାଡ଼ ଆନ୍ଦୋଳନ'ର ପ୍ରସ୍ତାବ ଗୃହୀତ ହୋଇଥିଲା । ଅଧିବେଶନ ପରେ ପରେ ଗାନ୍ଧିଜୀ ଓ ଅନ୍ୟାନ୍ୟ ନେତୃବୃନ୍ଦ ଗିରଫ ହେଲେ । ଯେଉଁମାନେ ବାହାରେ ରହିଲେ ସେମାନେ ଆତ୍ମଗୋପନ କଲେ । ଫଳରେ, ଆନ୍ଦୋଳନର ନେତୃତ୍ୱ ନେଲେ ଛାତ୍ରସମାଜ, କାରଖାନାର ଶ୍ରମିକ ଓ କୃଷକ ଶ୍ରେଣୀ । ଅବସ୍ଥା ଅଣଆୟତ୍ତ ହେବାରୁ ସରକାରଙ୍କ ତରଫରୁ ଦମନମୂଳକ ବ୍ୟବସ୍ଥା କରାଗଲା । ବାମଣ୍ଡା ସଂଗ୍ରାମୀ ମାନଙ୍କୁ ନେତୃତ୍ୱ ଦେଇଥିବା ଦୟାନନ୍ଦ ଦେଶଦ୍ରୋହ ଦଫାରେ ଗିରଫ ହେଲେ । ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି ଦାଶରଥି ମିଶ୍ର, ରାମଚନ୍ଦ୍ର ନାୟକ, ଗୌରିଶଙ୍କର ମହାପାତ୍ର ପ୍ରଭୃତି ଅଟକବନ୍ଦୀ ଅଇନ ଅନୁଯାୟୀ ୧ ୯ ୪ ୫ ସାଲ୍ ଯାଏ ଜେଲରେ ରହିଲେ ।

କେବିନେଟ୍ ମିଶନ୍ ମତ ଦେଲେ ଯେ ବର୍ତ୍ତମାନ ଗଡ଼ଜାତମାନଙ୍କର ପରିସ୍ଥିତିକୁ ଆୟତ୍ତ କରିବା ପାଇଁ ଏକମାତ୍ର ଉପାୟ ହେଉଛି ଓଡ଼ିଶା ପ୍ରଦେଶ ସହ ଗଡ଼ଜାତମାନଙ୍କର ମିଶ୍ରଣ। ଡ଼କ୍ଟର ହରେକୃଷ୍ଣ ମହାତାବ ୧୯୪୬ ମସିହା ମେ ମାସ ୧୦ ତାରିଖରେ ଏହି ପ୍ରସ୍ତାବକୁ ଗଡ଼ଜାତ ରାଜାମାନଙ୍କ ନିକଟକୁ ପଠାଇଲେ। ସେମାନେ କୌଣସି ଉତ୍ତର ନ ଦେବାରୁ ପୁଣି ଜୁନ୍ ୨୯ ତାରିଖରେ ସ୍ମାରକ ପତ୍ର ପଠାଗଲା। ରାଜାଗଣ ଏଥିରେ ସମ୍ମତ ହେଲେନାହିଁ। ବଡ଼ମ୍ବା ଓ କଳାହାଣ୍ଡି ରାଜା ଆପତ୍ତି ଉଠାଇ ଡ଼କ୍ଟର ମହାତାବଙ୍କ ଉପରେ ଦୋଷାରୋପ କଲେ।

୧୯୪୭ ଅକ୍ଟୋବର ୧୦ ତାରିଖ ବାମଣ୍ଡା ପ୍ରଜାମଣ୍ଡଳ ଆନ୍ଦୋଳନର ଏକ ସ୍ମରଣୀୟ ଦିବସ। ଦେବଗଡ ସବ୍‌ଡିଭିଜନ୍‌ରେ ପ୍ରଜାମଣ୍ଡଳ ଆନ୍ଦୋଳନ ଧିମେଇ ଯାଇଥିବା ଲକ୍ଷ୍ୟ କରି ଏକ କର୍ମୀଦଳକୁ ଗୁଣନିଧି ଗୌନ୍ତିଆଙ୍କ ନେତୃତ୍ୱରେ ସେ ଅଞ୍ଚଳକୁ ପଠାଗଲା। ପ୍ରଜାମଣ୍ଡଳ କର୍ମୀ ରମଣୀ ରଞ୍ଜନ ପଟେଲ, ଦାଶରଥି ପଟେଲ, ଛାଲ ଚୌଧୁରୀ, ଭାରତଚନ୍ଦ୍ର ଚୌଧୁରୀ, ବୃନ୍ଦାବନ ପଟେଲ, ମଦନ ପଟେଲ, ପୂର୍ଣ୍ଣଚନ୍ଦ୍ର ବାଗ୍ ଏହି ଦଳରେ ଗଲେ। ଗୁଣନିଧି ଗୌନ୍ତିଆ ରାଜନୈତିକ ଅବସ୍ଥା ଅନୁଧ୍ୟାନ କରିବା ପାଇଁ ରାଜଧାନୀ ଦେବଗଡ ଗଲେ ଏବଂ ଅନ୍ୟମାନେ ଦେବଗଡ ଠାରୁ ଆଠ କିଲୋମିଟର ଦୂର ଟାଇଁସର ଗ୍ରାମରେ ରାତ୍ରିଯାପନ କରିବାପାଇଁ ସ୍ଥିର କଲେ। ଗାଁ ଚୌକିଦାର ସ୍କୁଲ ଘରେ ସ୍ଥାନ ଦେବାକୁ ମନା କରିବାରୁ ସେମାନେ ଗାଁ ବାହାର ଏକ ପଟାଭାଡିରେ ଶୋଇଲେ। ଏ ସମ୍ବାଦ ରାଜଧାନୀରେ ପହଞ୍ଚିଲା। ପୋଲିସ୍ ଇନ୍ସପେକ୍ଟର ଟାଇଁସର ଆସି କର୍ମୀମାନଙ୍କ ସନ୍ଧାନ ନେଲେ। ପ୍ରାୟ ଅଧରାତି ବେଳକୁ ଗୋଟିଏ ପୋଲିସ୍ ଭ୍ୟାନ୍‌ରେ ପୋଲିସ୍ ସବ୍‌ଇନ୍ସପେକ୍ଟର ପଞ୍ଚାନନ ବେହେରା ଦଳେ ଗୁଣ୍ଡାଙ୍କୁ ଧରି ଆଲୋଚନା ପାଇଁ ଯିବା ନିମନ୍ତେ ରାଜା ଡକାଇଥିବା ଓ ଗୁଣନିଧି ଗୌନ୍ତିଆ ରାଜାଙ୍କ ପାଖରେ ଥିବା ବାହାନା କରି ସେମାନଙ୍କୁ ଗାଡିରେ ବସାଇଲେ। ଗାଡି ଦେବଗଡ ଅଭିମୁଖେ ନ ଯାଇ ସମ୍ବଲପୁର ଆଡକୁ ମୁହାଁଇଲା। ପୋଲିସ ସବ୍-ଇନ୍ସପେକ୍ଟର କର୍ମୀମାନଙ୍କୁ ତିଲେଇବଣି ଘନ ଜଙ୍ଗଲର ତ୍ରିଛକି ସ୍ଥାନରେ ଗାଡିରୁ ଓହ୍ଲାଇବାକୁ କହିଲେ। ସେମାନେ ଓହ୍ଲେଇଗଲା ପରେ ପୋଲିସ ବାହିନୀ କର୍ମୀମାନଙ୍କୁ

ନିର୍ଧୂମ ମାଡ ଦେଲେ। କାହାର ଦାନ୍ତ ଭାଙ୍ଗିଲା ତ କାହାର ଦୃଷ୍ଟିଶକ୍ତି ନଷ୍ଟ ହେଲା। କେହି କେହି ଆତ୍ମରକ୍ଷା ପାଇଁ ବିପଦ ସଂକୁଳ, ହିଂସ୍ରଜନ୍ତୁ ପୂର୍ଣ୍ଣ ଅରଣ୍ୟ ମଧ୍ୟକୁ ଘୋର ଅନ୍ଧକାର ରାତିରେ ଜୀବନକୁ ପାଣି ଛଡେଇ ପଶିଲେ। ପୋଲିସ୍ ଓ ମଦ୍ୟପ ଗୁଣ୍ଡା ଦଳ କର୍ମୀମାନଙ୍କୁ ମୃତ ମନେ କରି ଭ୍ୟାନରେ ବୋଝେଇ କରି ତୁଡ଼ି ଖୋଲ ଜଙ୍ଗଲରେ ପକାଇ ଦେବଗଡ଼ ଫେରିଗଲେ। ପରଦିନ ସକାଳେ ଏ ସମ୍ବାଦ ବିଜୁଳି ବେଗରେ ଚାରିଆଡେ ଖେଳିଗଲା। ଗୁଣନିଧି ଗୌନ୍ତିଆଙ୍କୁ ଦେବଗଡରେ ଅଟକ ରଖାଗଲା। ପ୍ରଜାମଣ୍ଡଳ କର୍ମୀଗଣ ଏ ସମ୍ବାଦ ପାଇ ସେମାନଙ୍କୁ ଉଦ୍ଧାର କଲେ ଏବଂ ଚିକିତ୍ସାର ବ୍ୟବସ୍ଥା କଲେ। ଦୟାନନ୍ଦ ଶତପଥି ଘଟଣାର ଅନୁସନ୍ଧାନ କରି କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ଜଣାଇଲେ।

ଗଡ଼ଜାତ ପ୍ରଜା ଆନ୍ଦୋଳନର ସ୍ଥିତିକୁ ଲକ୍ଷ୍ୟକରି ରାଜକୁମାର ହାଇସ୍କୁଲର ଛାତ୍ରଗଣ ଆନ୍ଦୋଳନରେ ଯୋଗଦେବା ପାଇଁ ସ୍ଥିର କରି ସ୍ଥାନୀୟ ଶୂଳିଆପଦାଠାରେ ସ୍କୁଲ ସମୟ ପରେ ଗୋପନରେ ମିଳିତ ହେଲେ ଏବଂ 'କାର୍ଯ୍ୟକାରୀ କମିଟୀ' ପାଇଁ ସଭ୍ୟ ସର୍ବସମ୍ମତି କ୍ରମେ ମନୋନୀତ କଲେ। ସଂଘର୍ଷ ସମିତିର ସଭାପତି ହେଲେ ରମଣୀରଞ୍ଜନ ନାଏକ ଓ ସମ୍ପାଦକ ହେଲେ ବାଳକୃଷ୍ଣ କର। ସକ୍ରିୟ ସଭ୍ୟ ଭାବେ କାମ କଲେ ସର୍ବଶ୍ରୀ ଭଗବାନ ସାହୁ, ବସନ୍ତ କୁମାର ସାହୁ, ବାସୁଦେବ ସିଂହ ମହାପାତ୍ର, ଜଗଦୀଶ ନାୟକ, ବେଣୁମାଧବ ପଣ୍ଡା, ହେମନ୍ତ କୁମାର ଗୌନ୍ତିଆ, ନନ୍ଦ କିଶୋର ପ୍ରଧାନ, ସୋମନାଥ ପ୍ରଧାନ, କେଶବ ଚନ୍ଦ୍ର ଭୁକ୍ତା, ହୃଦୟନାଥ ସାହୁ ପ୍ରମୁଖ ସଭ୍ୟଗଣ। ପ୍ରତିଦିନ ସନ୍ଧ୍ୟାରେ ଶୋଭାଯାତ୍ରା ହୁଏ ଏବଂ ରାଜଶାସନ ବିରୋଧୀ ସ୍ଲୋଗାନ ଦିଆଯାଏ। ଦେବଗଡ଼ ସହରବାସୀ ନୀରବଦ୍ରଷ୍ଟାଭାବେ ଶୋଭାଯାତ୍ରାକୁ ଦେଖନ୍ତି। ଶୋଭାଯାତ୍ରା ପରେ ଶୂଳିଆପଦାରେ ଏକ ସଭା ଅନୁଷ୍ଠିତ ହୋଇ ଦେଶ ଓ ରାଜ୍ୟର ରାଜନୈତିକ ଅବସ୍ଥା ଉପରେ ଆଲୋଚନା କରାଯାଏ। ଛାତ୍ରସଂଘର୍ଷ ସମିତିର ଆନ୍ଦୋଳନାତ୍ମକ ଅବସ୍ଥା ଦେଖି ହାଇସ୍କୁଲର ପ୍ରଧାନ ଶିକ୍ଷକ ଭୟଭୀତ ହେଲେ ଏବଂ ରାଜଦରବାରକୁ ଜଣାଇଲେ। ଦେଶ ସ୍ୱାଧୀନତା ଓ ଗଡ଼ଜାତ ମିଶ୍ରଣ ଆସନ୍ନ ଲକ୍ଷ୍ୟ କରି ଛାତ୍ରମାନଙ୍କ ଉପରେ କୌଣସି କଠିନ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରି ପ୍ରତ୍ୟେକଙ୍କଠାରୁ ଆନ୍ଦୋଳନରେ ଯୋଗ ନ ଦେବା ପାଇଁ ବ୍ୟକ୍ତିଗତ ମୁଚ୍ଲେକା ଲେଖାଇନେଲେ। ପ୍ରଧାନ ଶିକ୍ଷକଙ୍କ ବ୍ୟକ୍ତିଗତ ଅନୁରୋଧ କ୍ରମେ ମୁଚ୍ଲେକା ଲେଖିଦେଇ ମଧ୍ୟ ଛାତ୍ରଗଣ ଆନ୍ଦୋଳନରୁ ବିରତ ହେଲେନାହିଁ।

ସମାଜର ସବୁ ଶ୍ରେଣୀର ଲୋକେ ଯେତେବେଳେ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେଲେ, ଦୟାନନ୍ଦ ଶତପଥୀଙ୍କ ପ୍ରବର୍ତ୍ତନାରେ କୁଚିଣ୍ଡା ଅଞ୍ଚଳର ନାରୀମାନେ ଗୃହ ମଧ୍ୟରେ ଆବଦ୍ଧ ହୋଇ ରହିପାରିଲେ ନାହିଁ। ଗାଁମାନଙ୍କରେ ସଂଘବଦ୍ଧ ହୋଇ ଶୋଭାଯାତ୍ରା, ସଭା କରି ରାଜଶାସନ ବିରୁଦ୍ଧରେ ସେମାନେ ବିଭିନ୍ନ ଅଭିଯୋଗ ଆଣିଲେ ଏବଂ ରାଜଶାସନର ବିଲୋପ ପାଇଁ ସମସ୍ତ ପ୍ରକାର ପଦକ୍ଷେପ ନେବା ପାଇଁ ଶପଥ ନେଲେ। ଆନ୍ଦୋଳନ ଜୋରଦାର ଚାଲିଲା। ଦୟାନନ୍ଦଙ୍କ ଭଉଣୀ ଲବଙ୍ଗଲତା କୁଚିଣ୍ଡା ସବ୍‌ଡ଼ିଭିଜନସ୍ଥ ପାଗୁଆଭାଡ଼ି ଓ ପାଖାପାଖି ଅଞ୍ଚଳର ନେତୃତ୍ୱ ନେଇ ନାରୀମାନଙ୍କୁ ଆନ୍ଦୋଳନରେ ଯୋଗ ଦେବାପାଇଁ ପ୍ରବର୍ତ୍ତନା ଦେଲେ। ନାରୀମାନେ ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରିବା ଦ୍ୱାରା ଶାସକଙ୍କ ମୁଣ୍ଡ ବ୍ୟଥାର କାରଣ ହେଲା।

୧୯୪୭ ମସିହା ଡିସେମ୍ବର ୧୦ ତାରିଖରେ ରାଜଧାନୀ ଦେବଗଡ ନିକଟସ୍ଥ ବସାଲୋଇ ଉଡାଜାହଜ ପଡିଆରେ ଏକ ବିରାଟ ପ୍ରଜାମଣ୍ଡଳ ସମ୍ମିଳନୀର ଆୟୋଜନ କରାଗଲା। ଏହି ସମ୍ମିଳନୀରେ ବାମଣ୍ଡା ରାଜ୍ୟର କର୍ମଚାରୀ ମାଜିଷ୍ଟ୍ରେଟ ଶ୍ରୀ ଦୁର୍ଗାମାଧବ ଶର୍ମା, ଡାକ୍ତର ଶ୍ରୀ ମହେଶ୍ୱର ପ୍ରଧାନ ଆଦି ଗାନ୍ଧିଟୋପି ପିନ୍ଧି ସଭାରେ ଯୋଗଦେଲେ। ରାଜା ଭାନୁଗଙ୍ଗଙ୍କ ବ୍ୟକ୍ତିଗତ ଜୀବନ ତଥା ପ୍ରଜାତାଡନ ଉପରେ ବିସ୍ତୃତ ଆଲୋଚନା ହେଲା।

ଅନ୍ୟ ପକ୍ଷରେ, ରାଜନ୍ୟମଣ୍ଡଳୀ ରାୟପୁରସ୍ଥ ରାଜକୁମାର କଲେଜରେ ଏକତ୍ରିତ ହୋଇ ପୂର୍ବାଞ୍ଚଳ ରାଜ୍ୟ ୟୁନିୟନ୍ ଗଠନପୂର୍ବକ ରାୟଗଡକୁ ଏହାର ସଦରମହକୁମା କରିବା ପାଇଁ ସ୍ଥିର କଲେ। ସେମାନେ ଏକ ସମ୍ବିଧାନ ମଧ୍ୟ ପ୍ରସ୍ତୁତ କରିଥିଲେ। ସେଥିରେ ବ୍ୟବସ୍ଥା ଥିଲା ଯେ ଜଣେ ପ୍ରଧାନମନ୍ତ୍ରୀ ରହିବେ, କିନ୍ତୁ ବିଧାନ ସଭା ରହିବ ନାହିଁ। ଏଣେ ଢେଙ୍କାନାଳ ରାଜ୍ୟରେ ୧୯୪୭ ଅଗଷ୍ଟ ପନ୍ଦର ତାରିଖ ଦିନ ସାରଙ୍ଗଧର ଦାସ ଓ ପବିତ୍ର ମୋହନ ପ୍ରଧାନ ନେତାଦ୍ୱୟ ସ୍ୱାଧୀନତା ଘୋଷଣା କରି ଲୋକପ୍ରତିନିଧି ସରକାର ଗଠନ କଲେ। ଅନ୍ୟଦିଗରେ କ୍ଷୁଦ୍ରରାଜ୍ୟ ନୀଳଗିରିର ପ୍ରଜାମଣ୍ଡଳ ରାଜ୍ୟରେ ଏକ ସ୍ୱାଧୀନ ସରକାର ଗଠନ କଲେ। ନୀଳଗିରିର ଆଦିବାସୀ ଗଣ ଅଣ-ଆଦିବାସୀଙ୍କ ଧନସମ୍ପତ୍ତି ଲୁଟ କଲେ। ରାଜ୍ୟ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ନୀରବଦ୍ରଷ୍ଟା ହୋଇ ରହିଲେ। ଆଦିବାସୀଙ୍କ ଏତାଦୃଶ କାର୍ଯ୍ୟକଳାପ ଦେଖି ଡକ୍ଟର ହରେକୃଷ୍ଣ ମହତାବ ନୀଳଗିରିର ଶାସନ ଉପରେ ହସ୍ତକ୍ଷେପ କରିବା ପାଇଁ କେନ୍ଦ୍ର

ସରକାରଙ୍କୁ ଅନୁରୋଧ କଲେ । କେନ୍ଦ୍ର ସରକାର ବାଲେଶ୍ୱର କଲେକ୍ଟରଙ୍କ ଜରିଆରେ ନୀଳଗିରି ରାଜ୍ୟର ଶାସନଭାର ଗ୍ରହଣ କରିବାକୁ ଆଦେଶ ଦେଲେ । ନୀଳଗିରି ରାଜା ସ୍ୱତଃପ୍ରବୃତ୍ତ ଭାବେ ଶାସନ କରିବା ପାଇଁ ନିଜର ଅକ୍ଷମତା ପ୍ରକାଶ କରି ଓଡ଼ିଶା ସରକାରଙ୍କୁ ରାଜ୍ୟର ଶାସନଭାର ହସ୍ତାନ୍ତର କଲେ । ନୀଳଗିରି ରାଜ୍ୟ ଓଡ଼ିଶା ସହ ମିଶ୍ରଣ ଅନ୍ୟ ଦେଶୀୟ ରାଜ୍ୟ ଗୁଡିକର ମିଶ୍ରଣ ପାଇଁ ପଥ ଉନ୍ମୁକ୍ତ କଲା ।

ଲୌହ ମାନବ ସର୍ଦ୍ଦାର ପଟେଲ ଓ ସେକ୍ରେଟେରୀ ଭି.ପି. ମେନନ୍ ଓଡ଼ିଶା ଆସି କଟକ ଠାରେ ୧୯୪୭ ଡିସେମ୍ବର ୧୩ ତାରିଖରେ ରାଜନ୍ୟବର୍ଗଙ୍କ ଏକ ସଭା ଆହ୍ୱାନ କରି ରାଜ୍ୟଶାସନ ହସ୍ତାନ୍ତର କରିବା ପାଇଁ ପ୍ରସ୍ତାବ ଦେଲେ । ସର୍ଦ୍ଦାର ପଟେଲ ଆହୁରି ମଧ୍ୟ ପ୍ରତିଶ୍ରୁତି ଦେଲେ ଯେ ରାଜାମାନଙ୍କର ଧନ ଓ ସମ୍ପତ୍ତିର ରକ୍ଷା କରିବା ଦାୟିତ୍ୱ କେନ୍ଦ୍ର ସରକାର ବହନ କରିବେ । ଏତଦ୍‌ବ୍ୟତୀତ, ସେମାନଙ୍କ ରାଜ୍ୟର ଆୟକୁ ଲକ୍ଷ୍ୟରେ ରଖି ହାତପାଣ୍ଡି ଦେବାର ବ୍ୟବସ୍ଥା କରାଯିବ । ରାଜନ୍ୟବର୍ଗ ପ୍ରଜାଙ୍କ ଦ୍ୱାରା ଗାଦିଚ୍ୟୁତ ହେବା ଅପେକ୍ଷା ଏହାକୁ ଶ୍ରେୟ ମନେକଲେ । ପ୍ରଥମେ ଡିସେମ୍ବର ୧୪ ତାରିଖ ପୂର୍ବାହ୍ନରେ 'ଖ' ଓ 'ଗ' ଶ୍ରେଣୀର ରାଜାମାନଙ୍କୁ ଡକାଗଲା । ଅପରାହ୍ନରେ 'କ' ଶ୍ରେଣୀର ରାଜାମାନେ ସ୍ୱତନ୍ତ୍ର ବୈଠକରେ ଯୋଗ ଦେଲେ । ସର୍ଦ୍ଦାର ପଟେଲ ତାଙ୍କ ଭାଷଣରେ କହିଥିଲେ ଯେ – "Orissa states were like ulcers in the body of the province and that they must be cured or eliminated if they listen to his advice, they could be cured otherwise they might find themselves uprooted by the people."

'ଖ' ଓ 'ଗ' ଶ୍ରେଣୀର ରାଜାଙ୍କ ମଧ୍ୟରୁ ୧୨ ଜଣ ମିଶ୍ରଣ ଦଲିଲ୍‌ରେ ସେହିଦିନ ସନ୍ଧ୍ୟାରେ ହିଁ ଦସ୍ତଖତ କଲେ । 'କ' ଶ୍ରେଣୀର ରାଜାମାନଙ୍କୁ ମିଶ୍ରଣ ନିମନ୍ତେ ଚିନ୍ତା କରିବାକୁ ରାତି ୧୦ଟା ଯାଏ ସମୟ ଦିଆଗଲା । କେବଳ ଢେଙ୍କାନାଳ ରାଜାଙ୍କ ବ୍ୟତୀତ ଅନ୍ୟ କେହି ସମ୍ମତି ପ୍ରକାଶ କଲେ ନାହିଁ । ପରବର୍ତ୍ତୀ ଦିନ ସେକ୍ରେଟାରୀ ଭି.ପି. ମେନନ୍ ସତର୍କବାଣୀ ଶୁଣାଇ କହିଲେ ଯେ ଯଦି ସେମାନେ ନିଜ ରାଜ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା କରିପାରିବେ ନାହିଁ ତେବେ ସୈନ୍ୟବାହିନୀ ଦ୍ୱାରା ହସ୍ତକ୍ଷେପ କରାଯିବ । ଏହି ସତର୍କବାଣୀ ଶୁଣିବା ପରେ ଦେଶୀୟ ରାଜା ଗଣ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିବା ପାଇଁ ବାଧ୍ୟ ହୋଇ ରାଜି ହେଲେ । ବାମଣ୍ଡା ରାଜା ଦସ୍ତଖତ ନକରି

ଦେବଗଡ ଫେରି ଆସିଲେ । ରାଜ୍ୟର ରାଜନୈତିକ ପରିସ୍ଥିତି ଓ ଅସ୍ଥିରତା ଲକ୍ଷ୍ୟ କରି ବାଧ ହୋଇ ଡିସେମ୍ବର ୧୮ ତାରିଖରେ ଟେଲିଗ୍ରାମ ଯୋଗେ କ୍ଷମତା ହସ୍ତାନ୍ତର କରିବା ସମ୍ବାଦ ଓଡ଼ିଶା ସରକାରଙ୍କୁ ଜଣାଇଲେ । ଦେଶୀୟ ରାଜ୍ୟଗୁଡିକର ଶାସନଭାର ରାଜାମାନଙ୍କ ଠାରୁ ଗ୍ରହଣ କରିବା ପାଇଁ ପ୍ରତିରାଜ୍ୟରେ ଜଣେ ଲେଖାଏଁ ଏଡ୍‌ମିନିଷ୍ଟ୍ରେଟର ନିଯୁକ୍ତି କରାଗଲା । ବାମଣ୍ଡାର ଏଡ୍‌ମିନିଷ୍ଟ୍ରେଟର ହେଲେ ଶ୍ରୀ କେ.ସି ଦାସ । ଡିସେମ୍ବର ୩୧ ତାରିଖ ରାତି ୧୨ଟା ମଧରେ ରାଜ୍ୟର ଶାସନଭାର ଏଡମିନିଷ୍ଟ୍ରେଟର ମାନଙ୍କୁ ଅର୍ପଣ କରିବାକୁ ରାଜାମାନଙ୍କୁ ଓଡ଼ିଶା ସରକାର ନିର୍ଦ୍ଦେଶ ଦେଲେ । କେବଳ ମୟୁରଭଞ୍ଜ ମହାରାଜାଙ୍କ ବ୍ୟତୀତ ଅନ୍ୟ ସମସ୍ତ ରାଜା ନିଜ ରାଜ୍ୟର ଶାସନ ଦାୟିତ୍ୱ ନିର୍ଦ୍ଦିଷ୍ଟ ସମୟସୀମା ମଧରେ ଏଡ୍‌ମିନିଷ୍ଟ୍ରେଟର ମାନଙ୍କୁ ହସ୍ତାନ୍ତର କଲେ । ୧୯୪୮ ଜାନୁଆରୀ ୧ ତାରିଖରେ ଓଡ଼ିଶା ସହ ଗଡଜାତ ମାନଙ୍କର ମିଶ୍ରଣ ଘୋଷଣା କରାଗଲା ।

ଗଡଜାତ ମିଶ୍ରଣ ତଥା ସ୍ୱାଧୀନତା ଉତ୍ସବ ଗ୍ରାମେ ଗ୍ରାମେ ପାଳିତ ହେଲା । ତ୍ରିରଙ୍ଗା ପତାକା ଉତ୍ତୋଳନ କରାଗଲା । ସ୍ୱାଧୀନତା ଆନ୍ଦୋଳନ ସମୟରେ ନେତାଗଣ ସାଧାରଣ ଜନତାଙ୍କୁ ଅନେକ ଗୁଡିଏ ପ୍ରତିଶ୍ରୁତି ଦେଇଥିଲେ । ରାଜା, ଜମିଦାର, ଗୌନ୍ତିଆଙ୍କ ଚାଷ ଜମି ଭୂମିହୀନଙ୍କ ମଧରେ ବଣ୍ଟାଯିବ । ଦେଶରେ 'ରାମରାଜ୍ୟ' ପ୍ରତିଷ୍ଠା ହେବ । କେହି ଭୋକ ଉପାସରେ ରହିବେ ନାହିଁ । ସମସ୍ତଙ୍କ ପାଇଁ ଶିକ୍ଷା ଓ କର୍ମନିଯୁକ୍ତିର ବ୍ୟବସ୍ଥା ହେବ । ସେସବୁ ପ୍ରତିଶ୍ରୁତି ପାଣିର ଗାରରେ ପରିଣତ ହେଲା । ଦେଶରେ ଅଶାନ୍ତି, ବିଶୃଙ୍ଖଳା ବଢ଼ିଲା । ସାଧାରଣ ଜନତାର ଧନଜୀବନ ବିପଦାପନ୍ନ ହେଲା । ଲୋକେ ଇଂରେଜ, ରାଜାରାଜୁଡାଙ୍କ ଶାସନ ଓ ଗଣତନ୍ତ୍ର ମଧରେ ତୁଳନା କରି ପୂର୍ବଶାସନକୁ ଶ୍ରେୟ ମନେକଲେ । ପ୍ରଜାଗଣ ଯେଉଁ ରାଜାରାଜୁଡାଙ୍କ ବିରୁଦ୍ଧରେ ସଂଗ୍ରାମ କରି ସେମାନଙ୍କୁ ଗାଦିଚ୍ୟୁତ କରିଥିଲେ, ସେମାନେ ପୁଣି ମନ୍ତ୍ରୀ ହୋଇ ଓଡ଼ିଶାର ଶାସନଗାଦି ମାଡି ବସିଲେ । ଏକ କ୍ଷୁଦ୍ର ରାଜ୍ୟର ରାଜା ଓ କ୍ଷୁଦ୍ର ଜମିଦାରୀର ଜମିଦାର ବୃହତ୍ତର ରାଜ୍ୟର ଶାସକ ହେଲେ । ଶାସନ ଢ଼ାଞ୍ଚାରେ କିଛି ବଦଳିବା ଜନତା ଅନୁଭବ କଲେ ନାହିଁ । ଲୋକପ୍ରତିନିଧି ଗଣ ରାଜା ଜମିଦାରଙ୍କ ପରି ଅୟସ ଜୀବନଯାପନ କଲେ ଏବଂ ସାଧାରଣ ଜନତାଙ୍କ ଠାରୁ ଦୂରେଇ ରହିଲେ ।

ବ୍ରିଟିଶ୍ ଶାସକ ଏ ଦେଶ ଛାଡିବା ପୂର୍ବରୁ ସାମ୍ପ୍ରଦାୟିକ ବାଦ ତଥା ବିଚ୍ଛିନ୍ନତାବାଦର ବୀଜ ବପନ କଲେ ଯାହାକି ସ୍ୱାଧୀନତାର ଦୀର୍ଘ ଅର୍ଦ୍ଧଶତାବ୍ଦୀ ପରେ ବି ଜାତୀୟଜୀବନକୁ ବ୍ୟତିବ୍ୟସ୍ତ ତଥା ସଙ୍କଟାପନ୍ନ କରି ଦେଉଛି। ଏହାର ପରିସମାପ୍ତି କେବେ ଏହା ଏବେ ଦେଶ ଆଗରେ ଏକ ବିରାଟ ପ୍ରଶ୍ନବାଚୀ। ବାମଣ୍ଡା ରାଜ୍ୟର ଓଡ଼ିଶା ସହ ମିଶ୍ରଣ ପରେ ରାଜା ତଥା ରାଜବଂଶୀୟ ଲୋକଙ୍କର ପ୍ରରୋଚନାରେ 'ଆଦିବାସୀ ଆନ୍ଦୋଳନ' ତେଜି ଉଠିଲା। ବାମଣ୍ଡା ଅଧିବାସୀଙ୍କ ଦାବୀ ହେଲା, ଆମ ପୂର୍ବପୁରୁଷ ସୁନାକନ୍ଧ ଓ କଣ୍ଟାରୁ ଭୂୟାଁ ନାମକ ଦୁଇଜଣ ଆଦିବାସୀ ପାଟଣାର ରାଜପୁତ୍ରକୁ ଆଣି ବାମଣ୍ଡାରେ ରାଜବଂଶ ପ୍ରତିଷ୍ଠା କରିଥିଲେ। ଏଣୁ ସେମାନଙ୍କ ପରାମର୍ଶ ନନେଇ ବାମଣ୍ଡାରୁ ରାଜଶାସନ ଲୋପ କରାଗଲା କାହିଁକି ? ୧୯୪୮ ସାଲ ଜୁଲାଇ ମାସ ୨୬ ତାରିଖ। ମେଘ ମେଦୁର ଆକାଶ, ତୁହାକୁ ତୁହା ବର୍ଷା ହେଉଥାଏ। ଆଦିବାସୀ ପୁରୁଷଗଣ ସେମାନଙ୍କ ପାରମ୍ପରିକ ଅସ୍ତ୍ର,ଶସ୍ତ୍ର ଯଥା ଧନୁ, ତୀର, ବର୍ଚ୍ଛା ଓ ଖଣ୍ଡା ଧରି ଢ଼ୋଲ, ମହୁରୀ ଆଦି ବଜାଇ, ବାଦ୍ୟର ତାଳେ ତାଳେ ନୃତ୍ୟ କରି ରାଜ ଶାସନ ସପକ୍ଷରେ ବିଭିନ୍ନ ସ୍ଲୋଗାନ ଦେଇ ସେମାନଙ୍କ ରାଜ୍ୟ ସେମାନଙ୍କୁ ଫେରାଇ ଦେବାପାଇଁ ଦାବି କରି ଏକ ଶୋଭାଯାତ୍ରାରେ ଯାଇ ଏଡ୍‌ମିନିଷ୍ଟ୍ରେଟରଙ୍କ କାର୍ଯ୍ୟାଳୟ ଦଖଲ କରିବା ପାଇଁ ଚାହିଁଲେ। ମିଲିଟାରୀ ପୋଲିସ ବାହିନୀ ଦ୍ୱାରା ଶୋଭାଯାତ୍ରାକୁ ଅଟକ କରାଗଲା। ଆଇନ ଶୃଙ୍ଖଳା ଅବସ୍ଥା ଅଣଆୟତ୍ତ ହେବାରୁ ଗୁଳି ଚାଳନା କରାଗଲା। ସେମାନଙ୍କ ନେତୃବୃନ୍ଦ ଗିରଫ ହେଲେ। କେତେଜଣ ମୃତାହତ ହେଲେ, ସେସବୁ ଗୋପନ ରଖାଗଲା। ପ୍ରାୟ ପନ୍ଦର ଦିନ କାଳ ରାଜଧାନୀ ଦେବଗଡ ସୈନ୍ୟ ଛାଉଣୀରେ ପରିଣତ କରାଗଲା।

ଗଡଜାତ ଶାସନର ଅବସାନ ପରେ ଗତ ୫୮ ବର୍ଷ ହେଲା ଗଣତାନ୍ତ୍ରିକ ପଦ୍ଧତିରେ ବାମଣ୍ଡାର ବିଭିନ୍ନ ରାଜନୈତିକ ଦଳର ଶାସନ ଚାଲିଛି। ଇତିମଧ୍ୟରେ ପୂର୍ବତନ ବାମଣ୍ଡାର ଦେବଗଡ ସବ୍‌ଡିଭିଜନ ଏକ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ ହେଲାଣି।



# ବାମଣ୍ଡାରେ
# ଆଧୁନିକ ଶିକ୍ଷାର ପ୍ରଚଳନ

୧୮୧୭ ସାଲରେ ଇଂରେଜମାନେ ସମ୍ବଲପୁର ଅଧିକାର କଲା ପରେ କ୍ରମଶଃ ଏ ଅଞ୍ଚଳରେ ଆଧୁନିକ ଶିକ୍ଷାର ପ୍ରଚଳନ ହେଲା। ସେମାନଙ୍କ ଶାସନ ବିରୁଦ୍ଧରେ ବିଦ୍ରୋହ ହେବା ସତ୍ତ୍ୱେ ଜନସାଧରଣଙ୍କୁ ସେମାନଙ୍କ ଶାସନ ପ୍ରତି ଅନୁରକ୍ତ କରିବା ପାଇଁ ଇଂରାଜୀ ଶିକ୍ଷାର ପ୍ରଚଳନ କଲେ। ସମ୍ବଲପୁରରେ ପ୍ରଥମ ଇଂରାଜୀ ଶିକ୍ଷା ଆରମ୍ଭ ହୁଏ ୧୮୫୨ ସାଲରେ ଶାସକ କେଡେନ୍ ହେଡ୍‌ଙ୍କ ଆନୁକୂଲ୍ୟରେ। ଏହାର ପ୍ରଭାବ ପଡେ ଉଛମନା, ସଂସ୍କାରବାଦୀ ଗଡଜାତ ମାନଙ୍କ ଉପରେ। ଅନ୍ୟାନ୍ୟ ରାଜାମାନଙ୍କ ମଧରେ ଶିକ୍ଷା ପ୍ରତି ଅଧିକ ସଚେତନ ଥିଲେ ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବ। ସେ ହୃଦୟଙ୍ଗମ କଲେ ଯେ ଶିକ୍ଷା ବିନା ବାମଣ୍ଡାର ଉନ୍ନତି ସାଧିତ ହୋଇ ପାରିବ ନାହିଁ।

୧୮୭୦ ସାଲ୍ ଯାଏ ବାମଣ୍ଡା ଶିକ୍ଷାର ପରିସର ସୀମିତ ଥିଲା ଅବଧାନଙ୍କ ଚାଟଶାଳୀ ଶିକ୍ଷାରେ। ସାର୍ ବାସୁଦେବ ରାଜଗାଦିରେ ବସିବା ପରେ ୧୮୭୨ ସାଲ୍‌ରେ ନୂତନ ଶିକ୍ଷାର ପ୍ରଚଳନ ପାଇଁ ବିଦ୍ୟାଳୟ ମାନ ସ୍ଥାପନ କଲେ। ୧୮୯୪ ବେଳକୁ ରାଜ୍ୟରେ ପ୍ରାଥମିକ ବିଦ୍ୟାଳୟର ସଂଖ୍ୟାଥିଲା ୧୩ ଏବଂ ଏହି ବିଦ୍ୟାଳୟ ମାନଙ୍କରୁ ଉତ୍ତୀର୍ଣ୍ଣ ହୋଇଥିଲେ ମୋଟ ୯୦ ଜଣ ଛାତ୍ର। ସେମନଙ୍କ ମଧ୍ୟରୁ ୭୦ ଜଣଙ୍କୁ ରାଜ କର୍ମଚାରୀ ରୂପେ ନିଯୁକ୍ତ କରାଗଲା, ଫଳରେ କ୍ରମଶଃ ଜନସାଧାରଣଙ୍କ ଶିକ୍ଷା ପ୍ରତି ଆଗ୍ରହ ବଢ଼ିଲା। ରାଜା ନିଜେ ସ୍କୁଲ ପରିଦର୍ଶନ କରି ଦରିଦ୍ର ତଥା ମେଧାବୀ ଛାତ୍ର ମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିଲେ। ପୁନଶ୍ଚ, ୧୮୯୯ରେ ରାଜ୍ୟରେ ବିଜ୍ଞାନଗାର ପ୍ରତିଷ୍ଠା କରି ଛାତ୍ରମାନଙ୍କର ବିଜ୍ଞାନ ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରାଗଲା। ଏ ପର୍ଯ୍ୟନ୍ତ ବାମଣ୍ଡା ଶିକ୍ଷା ବିଭାଗ ରାଜାଙ୍କ ଅଧୀନରେ ଥିଲା। କିନ୍ତୁ ଶିକ୍ଷାର ଉତ୍କର୍ଷତା ସାଧନ ପାଇଁ ରାଜା ବାମଣ୍ଡା ଶିକ୍ଷାବିଭାଗକୁ ସମ୍ବଲପୁର ଶିକ୍ଷା ବିଭାଗ ସହ ସାମିଲ କଲେ। ସେହିଦିନଠାରୁ ସମ୍ବଲପୁରରେ ପ୍ରଚଳିତ ପାଠ୍ୟପୁସ୍ତକ ବାମଣ୍ଡାରେ ପ୍ରଚଳିତ କରାଗଲା।

ରାଜବଂଶର ପିଲାମାନେ ଅନ୍ୟ ପିଲାମାନଙ୍କ ସହ ମିଶି ପାଠ ପଢ଼ିବେ ଏ ଉଦ୍ଦେଶ୍ୟ ନେଇ ରାଜା ଉଚ୍ଚ ଶିକ୍ଷା ପାଇଁ ୧୮୮୨ ସାଲରେ ଗୋଟିଏ ହାଇସ୍କୁଲ ସ୍ଥାପନ କଲେ ଏବଂ ସ୍କୁଲର ନାମ ଦିଆଗଲା 'ରାଜକୁମାର ହାଇସ୍କୁଲ'। ସ୍କୁଲଟି କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା।[୧୪] ପ୍ରଥମେ ସ୍କୁଲଟି ଦୁଇଭାଗରେ ବିଭକ୍ତ ହୋଇଥିଲା ଯଥା - ମଧ୍ୟ ଇଂରାଜୀ (Middle English) ଓ ଭର୍ଣ୍ଣାକୁଲାର (Middle Vernacular)ସ୍କୁଲ। ପ୍ରାରମ୍ଭରେ ସ୍କୁଲ ଚାଲିଲା ରାଜପ୍ରସାଦର ଏକ ପ୍ରକୋଷ୍ଠରେ। ୧୮୮୬ ବେଳକୁ ଇଂରାଜୀ ବିଭାଗରେ ୩ ଜଣ ଓ ଓଡ଼ିଆ ବିଭାଗରେ ୫୨ ଜଣ ଛାତ୍ର ଥିଲେ। ଏହି ସଂଖ୍ୟା ବଢ଼ି ୧୮୮୮ ବେଳକୁ ହେଲା ଯଥାକ୍ରମେ ୯ ଓ ୮୩। ୧୮୯୧ ସାଲ୍‌ରେ ରାୟପୁରରେ ଅବସ୍ଥାପିତ ପଲିଟିକେଲ୍ ଏଜେଣ୍ଟ ଓ କେନ୍ଦ୍ରପ୍ରଦେଶର ଇନ୍ସପେକ୍ଟର ଅଫ୍ ସ୍କୁଲ୍ସ ପରିଦର୍ଶନ କରି ଦେଇଥିବା ଅନୁକୂଳ ମତାମତ ଯୋଗୁଁ ନିମ୍ନ ମାଧ୍ୟମିକ ସ୍କୁଲ ଉଚ୍ଚ ମାଧ୍ୟମିକ ସ୍କୁଲରେ ପରିଣତ ହେଲା। ୧୮୯୩ ସାଲ୍‌ରେ ରାୟପୁରର ପଲିଟିକାଲ ଏଜେଣ୍ଟ ଓ ଇନ୍ସପେକ୍ଟର ଅଫ୍ ସ୍କୁଲ୍ସ କବିବର ରାଧାନାଥ ରାୟ ସ୍କୁଲର ଉନ୍ନତି ଲକ୍ଷ୍ୟ କରି ଉଚ୍ଚ ପ୍ରଶଂସା କରିଥିଲେ। ପଲିଟିକାଲ୍ ଏଜେଣ୍ଟ ମନ୍ତବ୍ୟ ଦେଇଥିଲେ - "It is encouraging to find so good a school in a feudatory state. I wish other states would be enduced to follow the excellent example ........ It is generally in a flourishing state. The feudatory chief deserves recognition for the public spirit he has displayed in the efficient maintainance of the school."

୧୮୯୫ରେ ଏହି ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ସର୍ବପ୍ରଥମେ ସମ୍ବଲପୁର ଅଞ୍ଚଳର ବିଶ୍ୱନାଥ ପାଣିଗ୍ରାହୀ ନାମକ ଜଣେ ଛାତ୍ର ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ଏହି ବର୍ଷରେ ରାୟପୁର ପଲିଟିକାଲ ଏଜେଣ୍ଟଙ୍କ ମନ୍ତବ୍ୟରୁ ଜଣାଯାଏ ଯେ ରାଜା ବାସୁଦେବ ସାରା ରାଜ୍ୟରେ ପ୍ରାଥମିକ ଶିକ୍ଷାର ବିକାଶ ଦିଗରେ ପ୍ରାଧାନ୍ୟ ଦେଉଥିଲେ। ବାମଣ୍ଡା ରାଜ୍ୟରେ ପାଠ ପଢ଼ିବା ପାଇଁ ରାଜ୍ୟ ବାହାରର ପିଲାଙ୍କ ବୃତ୍ତି ଦେବାର ବ୍ୟବସ୍ଥା ଥିଲା।

---

[୧୪] ସମ୍ବଲପୁର ହିତୈଷିଣୀ - ୩/୪୫ - ତା.୨୪.୪.୧୮୯୨

୧୮୯୭ରେ ହାଇସ୍କୁଲରୁ ଜଣେ, ଏମ୍.ଭି ସ୍କୁଲରୁ ଚାରିଜଣ, ଉଚ୍ଚପ୍ରାଥମିକ ସ୍କୁଲରୁ ୧୩ ଜଣ ଓ ନିମ୍ନ ପ୍ରାଥମିକ ସ୍କୁଲରୁ ୨୪ ଜଣ ପାସ୍ କରିଥିବା ମଧ୍ୟ ପ୍ରଦେଶର ପଲିଟିକେଲ ଏଜେଣ୍ଟଙ୍କ ମନ୍ତବ୍ୟରୁ ଜଣାଯାଏ।

ଯଦିଓ ବାମଣ୍ଡାର ଶିକ୍ଷା ବିଭାଗକୁ ସମ୍ବଲପୁର ସହ ମିଶ୍ରଣ କରାଗଲା ଏଠାକାର ପ୍ରଚଳିତ ପାଠ୍ୟ ପୁସ୍ତକ ପ୍ରତି ସମାଲୋଚନା କରି ହିତୈଷିଣୀରେ ପ୍ରକାଶ ପାଇଛି ଯେ, 'ସମ୍ବଲପୁର ଶିକ୍ଷା ବିଭାଗରେ ପ୍ରଚଳିତ ପାଠ୍ୟ ପୁସ୍ତକ ଗୁଡିକ ମଧ୍ୟରୁ ପ୍ରାୟ ସମଗ୍ର ଅବିଶୁଦ୍ଧ। ଭାଷା ଖାଣ୍ଟି ଓଡ଼ିଆ ନୁହେଁ। କେତେକ ପୁସ୍ତକ ଇଂରାଜୀ ପୁସ୍ତକର ଅଜ୍ଞ ବ୍ୟକ୍ତିଙ୍କ ଦ୍ୱାରା କଦର୍ଯ୍ୟ ଭାବରେ ଅନୁବାଦ ହୋଇଥିବାରୁ ସେସବୁ ଅପ୍ରାଞ୍ଜଳ ଏବଂ ବିବିଧ ଦୋଷାଶ୍ରିତ, ପୁଣି ଏପରି କେତେକ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ଅଛି, ଯାହା ଶିକ୍ଷକ ମାନଙ୍କ ପକ୍ଷେ ସହଜବୋଧ ନୁହଇ। ଏପରି ଅବିଶୁଦ୍ଧି, ଅପ୍ରାଞ୍ଜଳ ଓ ଦୁର୍ବୋଧ ଇଂରାଜୀ ଧରଣର ଓଡ଼ିଆ ପାଠ୍ୟ ପୁସ୍ତକ ପଠନରେ ବାଳକମାନେ ଓଡ଼ିଆ ଭାଷାରେ ପାରଦର୍ଶିତା ଲାଭ କରିବା ଆଶା ଆକାଶକୁସୁମବତ୍ ଅଳୀକ ନୁହଁଇ ?'[୧୫]

୧୮୯୯ ସାଲ୍‌ରେ ରାଜା ମଧ୍ୟପ୍ରଦେଶର ପାଠ୍ୟପୁସ୍ତକ କମିଟିର ସଭ୍ୟଥାଇ ପୁସ୍ତକଗୁଡିକ ପଠନ ପୂର୍ବକ ନିଜର ମତାମତ ପ୍ରଦାନ କରୁଥିଲେ।

ସୁନାମଧନ୍ୟ ରାଜା ବାସୁଦେବ ସୁଢ଼ଳଦେବଙ୍କ ତା.୧୯.୧୧.୧୯୦୩ରେ ତିରୋଧାନ ପରେ ତାଙ୍କର ସୁଯୋଗ୍ୟ ପୁତ୍ର ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନଦେବ ସିଂହାସନ ଆରୋହଣ କଲେ। ସେ ମଧ୍ୟ ପିତାଙ୍କ ପଦାଙ୍କ ଅନୁସରଣ କରି ସାର୍ ବାସୁଦେବଙ୍କ ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କଲେ ଏବଂ ରାଜ୍ୟରେ ଶିକ୍ଷାର ବିସ୍ତାର ପାଇଁ ବହୁ କାର୍ଯ୍ୟକ୍ରମ ଗ୍ରହଣ କଲେ। ୧୯୦୪ ନଭେମ୍ବର ୧୦ ତାରିଖରେ ରାଜକୁମାର ହାଇସ୍କୁଲ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରୁ ଯାଇ ଆଲ୍‌ହାବାଦ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ହେଲା। ୧୯୦୫ ସାଲ୍‌ରେ ସମ୍ବଲପୁର ମଧ୍ୟପ୍ରଦେଶରୁ ଆସି ଓଡ଼ିଶା ଡିଭିଜନ୍‌ରେ ମିଶିବା ଫଳରେ ସାର୍ ବାସୁଦେବ ସୁଢ଼ଳଦେବଙ୍କ ସ୍ୱପ୍ନ ସଫଳ ହେଲା। ସମ୍ବଲପୁର ଓଡ଼ିଶା ଡ଼ିଭିଜନରେ ମିଶିବା ଫଳରେ ପୁନଶ୍ଚ ସ୍କୁଲ କଲିକତା ବିଶ୍ୱବିଦ୍ୟାଳୟ

---

[୧୫] ସମ୍ବଲପୁର ହିତୈଷିଣୀ - ୪/୩୨, ତା. ୧୧.୧୨.୧୮୯୨

ଅଧୀନକୁ ଆସିଲା । ଏହି ବର୍ଷଠାରୁ ଓଡ଼ିଆ ଓ ଇଂରାଜୀ ଗୋଟିଏ ବିଭାଗ ହେଲା ଏବଂ ଚତୁର୍ଥ ଶ୍ରେଣୀ ଠାରୁ ଇଂରାଜୀ ପଢ଼ା ଆରମ୍ଭ ହେଲା । ୧୯୦୪ରୁ ୧୯୦୬ ଯାଏ ରାଜକୁମାର ହାଇସ୍କୁଲର କେହି ପାସ୍ ନ କରିବାରୁ ସ୍କୁଲର ମଞ୍ଜୁରୀ ପ୍ରତ୍ୟାହୃତ ଲକ୍ଷ୍ୟରେ ଅନୁଧ୍ୟାନ କରିବା ପାଇଁ କଲିକତା ବିଶ୍ୱବିଦ୍ୟାଳୟ Mr. Shaw ଙ୍କୁ ବାମଣ୍ଡା ପଠାଇଲେ । ସେ ପରିଦର୍ଶନ ପରେ ମଞ୍ଜୁରୀ ପ୍ରତ୍ୟାହାର ନ କରିବା ପାଇଁ କେତେକ ସର୍ତ୍ତ ପୂରଣ ନିମନ୍ତେ ପ୍ରସ୍ତାବ ଦେଲେ । ସେ ସର୍ତ୍ତ ଗୁଡ଼ିକ ନିମ୍ନରେ ଦିଆଗଲା ।

୧. ବିଧିବଦ୍ଧ ଭାବେ ଏକ କମିଟି ହେବ ।

୨. ଆଉ ଜଣେ ଆଇ.ଏ ଯୋଗ୍ୟତା ସଂପନ୍ନ ଶିକ୍ଷକ ରଖାଯାଉ ଓ ହେଡ ପଣ୍ଡିତଙ୍କ ଦରମା ୨୫ ଟଙ୍କାକୁ ବୃଦ୍ଧି କରାଯାଉ ।

୩. ଶ୍ରେଣୀ କୋଠରୀ ଗୁଡିକର ପରିସର ବୃଦ୍ଧି କରାଯାଉ ।

୪. ଭଲ ଡେସ୍କ ଓ ବ୍ଲାକ୍‌ବୋର୍ଡର ବ୍ୟବସ୍ଥା କରାଯାଉ ।

୫. ଛାତ୍ର ଓ ଶିକ୍ଷକଙ୍କ ଆବଶ୍ୟକତା ଅନୁସାରେ ମଳମୂତ୍ରଖାନା ବ୍ୟବସ୍ଥା ହେଉ ।

୬. ଲାଇବ୍ରେରୀ ପୁସ୍ତକ କିଣିବା ସକାଶେ ମାସିକ ୩ ଟଙ୍କା ହାରରେ ଖର୍ଚ୍ଚ ବ୍ୟବସ୍ଥା କରାଯାଉ ।

୭. ଛାତ୍ରମାନଙ୍କ ଅଧ୍ୟୟନ କାଳରେ ଅଧଘଣ୍ଟା ଯାଏ ମଧ୍ୟବର୍ତ୍ତୀକାଳୀନ ବିଶ୍ରାମ ଦିଆଯାଉ ।

୮. ଛାତ୍ରମାନଙ୍କ ଜଳପାନ ପାଇଁ ଶିକ୍ଷକ ମାନଙ୍କ ବିଶ୍ରାମ ପାଇଁ ସ୍ୱତନ୍ତ୍ର କୋଠରୀର ବ୍ୟବସ୍ଥା ହେଉ ।

ଏହି ରିପୋର୍ଟ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ମିଟିଙ୍ଗ୍‌ରେ ତା. ୨୬.୬.୧୯୦୮ରେ ଅନୁମୋଦିତ ହେଲା । ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ତାଙ୍କ ଚିଠି ନଂ. ୩୮୧, ତା.୨୦.୭.୧୯୦୮ରେ ବିଦ୍ୟାଳୟକୁ ଏହି ନିଷ୍ପତ୍ତି ଜଣାଇଦେଇଥିଲେ ।

୧୯୦୫ ସାଲ୍ ଯାଏ ବାମଣ୍ଡାର ଶିକ୍ଷା ପାଇଁ ରାୟପୁରର ଏଜେନ୍ସି ଇନ୍ସପେକ୍ଟରଙ୍କ ଠାରୁ ଶାସନଗତ ସାହାଯ୍ୟ ମିଳୁଥିଲା।[୧୬] ସେତେବେଳେ ରାଜ୍ୟରେ ଶିକ୍ଷା ବାବଦରେ ଖର୍ଚ୍ଚ ହେଉଥିଲା ଟ.୭,୧୬୨.୦୦

ପିତାଙ୍କ ଆଦର୍ଶକୁ ପାଥେୟ କରି ରାଜା ସଚ୍ଚିଦାନନ୍ଦ ପ୍ରାଥମିକ ସ୍କୁଲ ସଂଖ୍ୟା ବୃଦ୍ଧି କରିବା ସହ ୧୯୦୬ରେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାକୁ ଆଇନ ପ୍ରଣୟନ କଲେ। ଉପେକ୍ଷିତ ତଥା ନିଷ୍ପେଷିତ ଶ୍ରେଣୀର ଲୋକଙ୍କୁ ମୂଳସ୍ରୋତରେ ସାମିଲ କରିବାପାଇଁ ୧୯୦୪ ସାଲରେ 'ଅନାର୍ଯ୍ୟ ବିଦ୍ୟାଳୟ' ଦେବଗଡରେ ସ୍ଥାପନ କଲେ। ସେତେବେଳେ ଉଚ୍ଚଶ୍ରେଣୀର ଲୋକଙ୍କ ଅଛୁବଜାତି ପ୍ରତି ଏପରି ଘୃଣାଭାବ ଥିଲା ଯେ କେହି ଏହି ବିଦ୍ୟାଳୟରେ ଶିକ୍ଷକତା କରିବା ପାଇଁ ରାଜି ହେଲେ ନାହିଁ, କିନ୍ତୁ ସଂସ୍କାରବାଦୀ ଗଞ୍ଜାମ ବେଲଗୁଣ୍ଠାର ନୈଷ୍ଠିକ ବ୍ରାହ୍ମଣ ବିଶ୍ୱନାଥ ଶତପଥି ଏହି ବିଦ୍ୟାଳୟରେ ଶିକ୍ଷକତା କରିବା ସହ ନିଜ ପୁତ୍ର ଦୟାନନ୍ଦ ଶତପଥିଙ୍କୁ ଅନାର୍ଯ୍ୟ ବିଦ୍ୟାଳୟରେ ପଢ଼ାଇଲେ। ଯେଉଁ ଦୟାନନ୍ଦ ଶତପଥି ଦିନେ ଭାରତର ସ୍ୱାଧୀନତା ସଂଗ୍ରାମରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ।

ଶିକ୍ଷାପ୍ରତି ରାଜା ସଚ୍ଚିଦାନନ୍ଦଙ୍କ ଦ୍ୱିତୀୟ ଉଲ୍ଲେଖନୀୟ ଅବଦାନ ହେଲା ନାରୀଶିକ୍ଷା ପ୍ରଚଳନ। ୧୯୦୪ ସାଲରେ ସେ ବାଳିକା ବିଦ୍ୟାଳୟ ସ୍ଥାପନ କରି ଏକ ନୂତନ ଦୃଷ୍ଟାନ୍ତ ସୃଷ୍ଟି କଲେ। ଯଦିଓ ସେତେବେଳେ ସମାଜ ନାରୀ ଶିକ୍ଷାର ଘୋର ବିରୋଧୀ ଥିଲା, ରାଜାଙ୍କର ନିର୍ଭୟତାକୁ ବିରୋଧ କରିବା ପାଇଁ କାହାରି ସାହାସ ନଥିଲା। ୧୯୧୨-୧୩ ବର୍ଷ ପରୀକ୍ଷାରେ ନିମ୍ନ ପ୍ରଥାମିକ ଶ୍ରେଣୀରୁ ଆଠଜଣ ଓ ଉଚ୍ଚ ପ୍ରାଥମିକ ଶ୍ରେଣୀରୁ ଚାରିଜଣ ଛାତ୍ରୀ ଉତ୍ତୀର୍ଣ୍ଣ ହେଲେ। କ୍ରମଶଃ, ବାମଣ୍ଡାରେ ନାରୀ ଶିକ୍ଷାରେ ବିକାଶ ଘଟିଲା। ରାଜା ନିଜ ପରଲୋକଗତ କନ୍ୟାର ସ୍ମୃତି ଉଦ୍ଦେଶ୍ୟରେ ଏହି ବିଦ୍ୟାଳୟର ନାମ ଦେଲେ 'ମନ୍ଦାକିନୀ ବାଳିକା ବିଦ୍ୟାଳୟ' ଏବଂ ପ୍ରାଥମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ରୀମାନଙ୍କୁ ମିଡିଲ୍ ଭର୍ଣ୍ଣାକ୍ୟୁଲାର ଶ୍ରେଣୀରେ ପଢ଼ିବା ପାଇଁ ଉତ୍ସାହିତ କରିବା ନିମନ୍ତେ ନିକଟବର୍ତ୍ତୀ ଗ୍ରାମର ବାଳିକା ମାନଙ୍କୁ ଦୁଇଟଙ୍କା ଓ ଦୂରବର୍ତ୍ତୀ ଗ୍ରାମର ବାଳିକା ମାନଙ୍କୁ ଚାରିଟଙ୍କା ବୃତ୍ତି ଦେବାର ବ୍ୟବସ୍ଥା କରିଥିଲେ। ଏଥିପାଇଁ ୧୧୦୦ ଟଙ୍କାର ଏକ ସ୍ଥାୟୀ ପାଣ୍ଠିର ବ୍ୟବସ୍ଥା କରାଗଲା। ପ୍ରତିବର୍ଷ

[୧୬] Development of Seconday Edn. in Orissa - 1882- 1966, by Dr. V.B. Shastry.

ଶେଷ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ରୀଙ୍କୁ 'କରୋନେସନ୍ସ ମେଡେଲ' ଦେବାକୁ ଘୋଷଣା କରିଥିଲେ। ବାଳିକା ବିଦ୍ୟାଳୟର ଛପର ଘରକୁ ପକ୍କା କରିବା ପାଇଁ ମଧ୍ୟ ଦୁଇହଜାର ଟଙ୍କା ମଞ୍ଜୁର କଲେ।

ରାଜା ସଚ୍ଚିଦାନନ୍ଦ ୧୯୧୦ ସାଲ୍‌ରେ 'ପ୍ରାଜ୍ଞ' ସ୍କୁଲ ସ୍ଥାପନ କଲେ। ଏହି ସ୍କୁଲ ସ୍ଥାପନ କରିବାର ଉଦ୍ଦେଶ୍ୟ ଥିଲା ପିଲାଙ୍କୁ ମାତୃଭାଷା ପ୍ରତି ଆକୃଷ୍ଟ କରିବା। ଉଚ୍ଚ ପ୍ରାଥମିକ ପରୀକ୍ଷାରେ ପାସ୍ କରିବା ପରେ ପିଲାମାନେ ଏହି ବିଦ୍ୟାଳୟରେ ଛଅବର୍ଷ ପଢ଼ି ଯୋଗ୍ୟ ବିବେଚିତ ହେଲେ 'ପ୍ରାଜ୍ଞ' ଉପାଧି ଲାଭ କରୁଥିଲେ। ଏହାଫଳରେ ପିଲାଙ୍କ ମାତୃଭାଷା ପ୍ରତି ଶ୍ରଦ୍ଧା ବୃଦ୍ଧି ପାଇଲା।

୧୯୧୨ ସାଲ୍ ପର୍ଯ୍ୟନ୍ତ ଓଡ଼ିଶାର ସାମନ୍ତ ରାଜ୍ୟ ମାନଙ୍କରେ ମାତ୍ର ତିନୋଟି ସ୍କୁଲ ଥିଲା। ସେ ତିନୋଟି ହେଲା ବାମଣ୍ଡା, ଢ଼େଙ୍କାନାଳ ଓ ମୟୁରଭଞ୍ଜ। ଏହି ତିନୋଟିଯାକ ହାଇସ୍କୁଲ କଲିକତା ବିଶ୍ୱବିଦ୍ୟାଳୟ ସହ ସଂଲଗ୍ନ ଥିଲା। ବାମଣ୍ଡା ହାଇସ୍କୁଲ ୧୯୨୨-୨୩ ପର୍ଯ୍ୟନ୍ତ ଏକ ପୂର୍ଣ୍ଣାଙ୍ଗପ୍ରାପ୍ତ ସ୍କୁଲ ଥିଲା।

୧୯୨୩ ସାଲ୍‌ରେ ଏହାର ସ୍ୱୀକୃତି ପ୍ରତ୍ୟାହାର କରି ନିଆଗଲା। ପୁନର୍ବାର ୧୯୨୮-୨୯ ସାଲ୍‌ରେ ସ୍କୁଲ ତାର ପୂର୍ବାବସ୍ଥା ଫେରି ପାଇ ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱୀକୃତିପ୍ରାପ୍ତ ହେଲା।

୧୯୩୬ ସାଲ୍ ବେଳକୁ ରାଜ୍ୟରେ ଗୋଟିଏ ହାଇସ୍କୁଲ ବ୍ୟତୀତ ତିନୋଟି ଏମ୍.ଭି. ସ୍କୁଲ ଥିଲା। ଏମ୍. ଭି ବାଳିକା ବିଦ୍ୟାଳୟରେ ୧୯୪୧-୪୨ ବେଳକୁ ଛାତ୍ରୀ ସଂଖ୍ୟା ଥିଲେ ତିନିଜଣ। ଏହା ୧୯୪୩-୪୪ରେ ୧୫ ଜଣକୁ ବୃଦ୍ଧି ପାଇଥିଲା। ୧୯୪୪-୪୫ରେ ରାଜ୍ୟରେ ଦୁଇଟି ଏମ୍.ଇ ସ୍କୁଲ ଖୋଲିଲା ଏବଂ ୧୯୪୬-୪୭ ବେଳକୁ ଏହାର ସଂଖ୍ୟା ଚାରିକୁ ବୃଦ୍ଧି ପାଇଲା।[୧୭]

ସ୍ୱାଧୀନତାପରେ କ୍ରମଶଃ ହାଇସ୍କୁଲ, ଏମ୍.ଇ ସ୍କୁଲ ଓ ପ୍ରାଥମିକ ସ୍କୁଲ ସଂଖ୍ୟାର କ୍ରମବିକାଶ ଘଟିଲା।

---

[୧୭] Development of Seconday Edn. in Orissa - 1882- 1966, by Dr. V.B. Shastry.

## ବାମଣ୍ଡାର ପ୍ରାଥମିକ ଶିକ୍ଷାର ଏକ ଝଲକ

ପୂର୍ବତନ ଗଡ଼ଜାତ ବାମଣ୍ଡା ରାଜ୍ୟର ପ୍ରାଥମିକ ଶିକ୍ଷା ଏତେ ଉଚ୍ଚକୋଟୀର ଥିଲା ଯେ ବର୍ତ୍ତମାନ କହିଲେ କେହି ବିଶ୍ୱାସ କରିବେ ନାହିଁ। ସେ ସମୟରେ ଶିକ୍ଷକ ମାନଙ୍କର କର୍ତ୍ତବ୍ୟନିଷ୍ଠା, ଛାତ୍ର ବତ୍ସଳତା ଓ ଶିକ୍ଷା ଦାନ ପ୍ରତି ଅନୁରକ୍ତି ଦ୍ୱାରା ହିଁ ପ୍ରାଥମିକ ସର୍ବୋତ୍କୃଷ୍ଟ ସ୍ଥାନ ଲାଭ କରି ପାରିଥିଲା। ସେତେବେଳେ ଶିକ୍ଷକଗଣଙ୍କ ବିଦ୍ୟାଳୟ ଥିଲା ନିଜର ଗୃହ ସଦୃଶ ଏବଂ ଛାତ୍ରମାନେ ଥିଲେ ସେମାନଙ୍କର ପରିବାରର ସଦସ୍ୟ ତୁଲ୍ୟ। ଘରୋଇ ଟିଉସନ୍ କରି ଅର୍ଥ ଉପାର୍ଜନ କରିବା ସେମାନଙ୍କ ଜୀବନର ଲକ୍ଷ୍ୟ ନଥିଲା। ଛାତ୍ରମାନଙ୍କୁ ଉପଯୁକ୍ତ ମଣିଷ କରି ଗଢ଼ିବା ନିଜର ପବିତ୍ର କର୍ତ୍ତବ୍ୟ ବୋଲି ସେମାନେ ବିବେଚନା କରୁଥିଲେ।

ଶିକ୍ଷାଦାନ ବ୍ୟତୀତ ଶିକ୍ଷକଗଣ ପାଠ୍ୟେତର କାର୍ଯ୍ୟାବଳୀ ପ୍ରତି ବିଶେଷ ପ୍ରାଧାନ୍ୟ ଦେଉଥିଲେ। ବିଦ୍ୟାଳୟର ଶାନ୍ତ ପରିବେଶ, ଫୁଲଫଳ ଭରା ଉଦ୍ୟାନ ପିଲାଙ୍କ ମନରେ ସୃଷ୍ଟି କରୁଥିଲା ଅପାର ଆନନ୍ଦ। ବିଭିନ୍ନ ଋତୁରେ ପ୍ରକୃତି ଯୋଗାଉଥିବା ଫଳ ପିଲାଙ୍କ ମଧ୍ୟରେ ବଣ୍ଟନ କରାଯାଉଥିଲା। ପିଲାଏ ନିଜ ଯତ୍ନରେ ବଢ଼ାଇଥିବା ଗଛର ଫଳଟିଏ ଖାଇ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ। ବିଦ୍ୟାଳୟ କାର୍ଯ୍ୟ ଚାଲୁଥିବା ବେଳେ ସମୟ ସମୟରେ ଶିକ୍ଷକମାନେ ଛାତ୍ରମାନଙ୍କୁ ନେଇ ଯାଉଥିଲେ ଉଦ୍ୟାନସ୍ଥ ବୃକ୍ଷର ସୁଶୀତଳ ଛାୟାକୁ। ସେଇଠି ବସି ଛାତ୍ରମାନେ ଉଦ୍ୟାନକୁ ନିରୀକ୍ଷଣ କରି ରଚନା ଲେଖୁଥିଲେ। ରଚନାର ବିଷୟବସ୍ତୁ ଥିଲା 'ମୋ ବିଦ୍ୟାଳୟ', 'ଆମ ସ୍କୁଲ ବଗିଚା', 'ପନିପରିବା ଚାଷ', 'କୃଷକର ଆତ୍ମକାହାଣୀ', ଇତ୍ୟାଦି ଇତ୍ୟାଦି। ଭାଷା ନିଜର କିନ୍ତୁ ପ୍ରକୃତି ଯୋଗାଉଥିଲା ଭାବର ଖୋରାକ। ବେଳେ ବେଳେ ଅଙ୍କ ଓ ବିଜ୍ଞାନ ମଧ୍ୟ ପଢ଼ାଯାଏ ଉଦ୍ୟାନର ବୃକ୍ଷ ଗହଳରେ। ଉଦ୍ଭିଦ ବିଜ୍ଞାନ ଓ କୃଷି ବିଜ୍ଞାନ ଶିକ୍ଷା ପାଇଁ ଉଦ୍ୟାନ ଗବେଷଣାଗାରର କାମ କରୁଥିଲା।

ବିଦ୍ୟାଳୟ ପରିସର ମଧ୍ୟରେ ବାମଣ୍ଡା, ଓଡ଼ିଶା ଓ ଭାରତବର୍ଷର ରିଲିଫ୍ ମାନଚିତ୍ର ତଆରି କରି ପ୍ରାକୃତିକ ଭୂଗୋଳ ଉପରେ ଛାତ୍ରମାନଙ୍କୁ ପ୍ରତ୍ୟକ୍ଷ ଜ୍ଞାନ ଦିଆଯାଥିଲା। ପର୍ବତ ଶ୍ରେଣୀ, ମରୁଭୂମି, ହ୍ରଦ ବ୍ୟତୀତ ଚିରସ୍ରୋତା ସ୍ରୋତସ୍ୱତୀ ବିଦ୍ୟାଳୟ ପ୍ରାଙ୍ଗଣରେ ବର୍ଷସାରା ବହୁଥିଲା ସାଗରାଭିମୁଖୀ ହୋଇ। ଏ ସମସ୍ତ ମନୋରମ ଦୃଶ୍ୟ ହିଁ ପିଲାଙ୍କୁ ବିଶେଷ ଭାବେ ବିଦ୍ୟାଳୟକୁ ଆକର୍ଷଣ କରୁଥିଲା।

ଗଡଜାତ ସମୟରେ ପ୍ରାଥମିକ ବିଦ୍ୟାଳୟ ସ୍ତରରେ ପିଲାମାନଙ୍କୁ ଧନ୍ଦାମୂଳକ ଶିକ୍ଷା ଦେବାର ବ୍ୟବସ୍ଥା ଥିଲା । ଭବିଷ୍ୟତ ବଂଶଧର ଶିକ୍ଷା ସମାପ୍ତି ପରେ ଚାକିରି ପଛରେ ନ ଗୋଡାଇ କିପରି ସ୍ୱାବଲମ୍ବୀ ହେବେ ଏହା ମୂଳରେ ଥିଲା ସେହି ପରିକଳ୍ପନା । ବିଦ୍ୟାଳୟର ପାରିପାର୍ଶ୍ୱିକ ଅବସ୍ଥାକୁ ନେଇ ପ୍ରଧାନ ଶିକ୍ଷକ ନିଜ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ କରୁଥିଲେ । ଏହି ଧନ୍ଦାମୂଳକ ଶିକ୍ଷା ମଧ୍ୟରେ ସୂତାକଟା, ଲୁଗାବୁଣା, ବେଣାରେ ମସିଣା ତିଆରି, ବଢ଼େଇ କାମ, କମାର କାମ, ପନିପରିବା ଚାଷ ଆଦି ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । ଝିଅମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ବେଣାରେ ଟୋକେଇ, ବେଣା ଚେରରେ ବିଞ୍ଚଣା ତିଆରି ଆଦି ।

ଶିକ୍ଷକଗଣ ପିଲାଙ୍କ ଦୈହିକ ପରିଷ୍କୃତି ଉପରେ ଗୁରୁତ୍ୱ ଦେଉଥିଲେ । ପିଲାଙ୍କ ନଖ ବଢ଼ିଥିଲେ, ଦାନ୍ତ ଅପରିଷ୍କାର ଥିଲେ, ମଇଳା ପୋଷାକ ପିନ୍ଧିଥିଲେ ବିଦ୍ୟାଳୟ ପରିସର ମଧ୍ୟରେ ପରିଷ୍କାର ପରିଚ୍ଛନ୍ନ ହେବା ପାଇଁ ବ୍ୟବସ୍ଥା ଥିଲା । ଏହା ଫଳରେ ବାପା, ମା ବାଧ୍ୟ ହୋଇ ପିଲାଙ୍କୁ ପରିଷ୍କାର ପରିଚ୍ଛନ୍ନ କରି ବିଦ୍ୟାଳୟକୁ ପଠାଉଥିଲେ । ବିଦ୍ୟାଳୟ ପରିସର ମଧ୍ୟରେ 'ଧୋବା ଘର', 'ଭଣ୍ଡାରୀ ଘର' ଆଦି ତିଆରି କରାଯାଇଥିଲା । ଆବଶ୍ୟକ ସ୍ଥଳେ ପିଲାମାନେ ସେଠାକୁ ଯାଇ ପରିଷ୍କାର ପରିଚ୍ଛନ୍ନ ହେଉଥିଲେ ।

ପ୍ରାଥମିକ ବିଦ୍ୟାଳୟରେ କବିଂ ସଂଗଠନ ଥିଲା । ଜଣେ ତାଲିମ୍‌ପ୍ରାପ୍ତ ଶିକ୍ଷକ କବିଂ ଦାୟିତ୍ୱରେ ରହୁଥିଲେ । କବିଂ କ୍ଲାସ୍‌ରେ ଆକସ୍ମିକ ଦୁର୍ଘଟଣା ଘଟିଲେ କିପରି ପ୍ରାଥମିକ ଚିକିତ୍ସା କରାଯିବ ତା ଉପରେ ତାଲିମ ଦିଆଯାଉଥିଲା । ପ୍ରତ୍ୟେକ ବାଳଚର ନଜ ଡାଏରୀ ବହିରେ ପ୍ରତିଦିନ କି କି ପରୋପକାର କଲେ ସେଥିରେ ଉଲ୍ଲେଖ କରୁଥିଲେ ଏବଂ ଶିକ୍ଷକ ସପ୍ତାହରେ ଥରେ ସେହି ଡାଏରୀ ବହିକୁ ତଦାରଖ କରୁଥିଲେ । ରାଜ୍ୟସ୍ତରୀୟ ପରିଦର୍ଶକଗଣ ନୂଆଁ ନୂଆଁ ସ୍ଲୋଗାନ ଓ ଖେଳ ଶିକ୍ଷା ଦେଉଥିଲେ । ବର୍ଷରେ ଥରେ ଲେଖାଏଁ ବିଦ୍ୟାଳୟ ନିକଟସ୍ଥ କୌଣସି ଏକ ନିର୍ଜନ ସ୍ଥାନରେ "Camp Fire" ଅନୁଷ୍ଠିତ ହେଉଥିଲା । ରାତ୍ରୀ କାଳରେ ଅଗ୍ନି ପ୍ରଜ୍ୱଳିତ କରି ଚତୁର୍ପାର୍ଶ୍ୱରେ ନୃତ୍ୟଗୀତର ଆସର ଜମୁଥିଲା ।

ସେତେବେଳେ ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ରାଜ୍ୟ ସରକାର ରାଜ୍ୟର ମୁଖ୍ୟ ଚିକିତ୍ସା ଅଧିକାରୀଙ୍କୁ ଦାୟିତ୍ୱ ଦେଇଥିଲେ। ସେ ବିଦ୍ୟାଳୟ ମାନଙ୍କୁ ଯାଇ ପିଲାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିବା ସହ କୌଣସି ପିଲା ରୋଗରେ ଆକ୍ରାନ୍ତ ହୋଇଥିଲେ ତା'ର ଚିକିତ୍ସା ବ୍ୟବସ୍ଥା କରୁଥିଲେ।

ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକୁ ସେତେବେଳେ ଶିକ୍ଷା ବିଭାଗୀୟ କର୍ମଚାରୀ ମାନଙ୍କ ବ୍ୟତୀତ ରାଜସ୍ୱ ବିଭାଗର କର୍ମଚାରୀଗଣ ନିୟମିତ ପରିଦର୍ଶନ କରୁଥିଲେ। ପରିଦର୍ଶନ ବେଳେ ଗ୍ରାମର ଗୌନ୍ତିଆ ତଥା ଗ୍ରାମବାସୀ ଉପସ୍ଥିତ ରହୁଥିଲେ। ପରିଦର୍ଶକ ଗଣ ଛାତ୍ର ଉପସ୍ଥାନ ଠାରୁ ଆରମ୍ଭ କରି ସ୍କୁଲ ଘର ଓ ଶିକ୍ଷକ ଡେରା ମରାମତି, ସ୍କୁଲ ବଗିଚାର ବାଡ଼ବନ୍ଦୀ ଆଦି ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରୁଥିଲେ।

ସ୍ୱାଧୀନତା ପରେ ଏ ସବୁର ବ୍ୟତିକ୍ରମ ଦେଖାଯାଏ। ଏବେ ଛାତ୍ରଙ୍କ ଅନୁପସ୍ଥିତି କଥା ଚିନ୍ତା କରିବା ପରିବର୍ତ୍ତେ ଶିକ୍ଷକମାନଙ୍କ ବିଦ୍ୟାଳୟରେ ଅନୁପସ୍ଥିତି କଥା ଚିନ୍ତା କରାଯାଉଛି, ଏହାଠାରୁ ଅଧିକ କି ହାସ୍ୟାସ୍ପଦ ବିଷୟ ହୋଇପାରେ ?



# ବାମଣ୍ଡାର
# ସାରସ୍ୱତ ସାଧନା

ଊନବିଂଶ ଶତାବ୍ଦୀର ଶେଷ ଦଶକ ଓ ବିଂଶ ଶତାବ୍ଦୀର ପ୍ରଥମ ଦଶକ ଓଡ଼ିଆ ଭାଷାର ଏକ ସନ୍ଧିକ୍ଷଣ। ଏ ଭାଷା ଓଡ଼ିଶା ମାଟିରେ ରହିବ କି ଲୋପ ପାଇବ ଏପରି ଏକ ଦ୍ୱନ୍ଦାତ୍ମକ ପରିସ୍ଥିତି ସୃଷ୍ଟି ହୋଇଥିଲା। ଓଡ଼ିଆ ଭାଷାର ସଂରକ୍ଷଣ ପାଇଁ ଓଡ଼ିଶାର ସାହିତ୍ୟ ସାଧକଙ୍କ ସମେତ ରାଜା ସାର୍ ବାସୁଦେବଙ୍କ ଅବଦାନ ପ୍ରଶଂସନୀୟ। ଓଡ଼ିଆ ଭାଷାର ସୁରକ୍ଷା ପାଇଁ ବାମଣ୍ଡାରେ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ମୁଖ୍ୟ ଭୂମିକା ଗ୍ରହଣ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ବାମଣ୍ଡାରେ ସାଂସ୍କୃତିକ ଚେତାନର ଅଭ୍ୟୁଦୟ ହୋଇଥିଲା ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ। ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକ ଯାଏଁ ଏ ରାଜ୍ୟର ଅଧିବାସୀଙ୍କ ବାହ୍ୟଜଗତ ସହ କୌଣସି ସମ୍ପର୍କ ନଥିଲା। ଏଥିଲା ଏକ ଅନ୍ଧାରୀ ମୂଲକ। ଘନ ଅରଣ୍ୟାନୀ ମଧ୍ୟରେ ଏଠାକାର ଅଧିବାସୀ ଆଦିମଯୁଗର ଚଳଣି ମଧ୍ୟରେ ଆବଦ୍ଧ ଥିଲେ। ଉନ୍ନତ ଦେଶ ଇଂଲଣ୍ଡର ନୂତନ ଜ୍ଞାନ କୌଶଳକୁ ବାମଣ୍ଡା ରାଜ୍ୟରେ ପ୍ରବେଶ କରାଇଲେ ରାଜା ସାର୍ ବାସୁଦେବ ସୁଢ଼ଳ ଦେବ। ସେ ଭାରତ ବର୍ଷର ବିଭିନ୍ନ ଅଞ୍ଚଳକୁ ତୀର୍ଥାଟନରେ ଯାଇ ଯେଉଁ ଜ୍ଞାନ ଆହରଣ କଲେ ସେ ସବୁକୁ ବାମଣ୍ଡା ରାଜ୍ୟରେ କାର୍ଯ୍ୟକାରୀ କରିବା ପାଇଁ ପ୍ରୟାସୀ ହେଲେ। ରାଜା ବାସୁଦେବଙ୍କ ସମୟରେ ବୈଜ୍ଞାନିକ ତଥା ସାଂସ୍କୃତିକ ଭିତ୍ତିଭୂମି ପ୍ରତିଷ୍ଠା ହେଲା ବାମଣ୍ଡା ରାଜ୍ୟରେ। ରାଜ୍ୟରେ ଉନ୍ନତ କୃଷି ପ୍ରଣାଳୀର ପ୍ରୟୋଗ, ବୈଜ୍ଞାନିକ ଯନ୍ତ୍ରପାତିର ବ୍ୟବହାର ଓ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ଦ୍ୱାରା ରାଜ୍ୟ ଉନ୍ନତି ପଥରେ ଆଗେଇ ଚାଲିଲା।

ରାଜା କେବଳ ଭୌତିକ ପ୍ରଗତି ମଧ୍ୟରେ ଆବଦ୍ଧ ନ ରହି ଜନସାଧାରଣଙ୍କ ମଧ୍ୟରେ କିପରି ସାଂସ୍କୃତିକ ଚେତନାର ଅଭ୍ୟୁଦୟ ହେବ, ସେଥିପାଇଁ ଅହରହ ଉଦ୍ୟମ କଲେ। ରାଜଧାନୀ ଦେବଗଡ଼ରେ ୧୮୮୬ ସାଲ୍‌ରେ ମୁଦ୍ରା ଯନ୍ତ୍ର ସ୍ଥାପନ ଓ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ପ୍ରତିକାର ମୁଦ୍ରଣ ତଥା ଦେଶର ବିଭିନ୍ନ ଅଞ୍ଚଳର ପଣ୍ଡିତ

ମାନଙ୍କୁ ଆମନ୍ତ୍ରଣ କରି ତର୍କ ସଭାର ଆୟୋଜନ, କବି ଓ ଲେଖକମାନଙ୍କୁ ସମାଦର ଓ ସମ୍ମାନିତ, ସଂସ୍କୃତ ଭାଷାର ପ୍ରଣୀତ ଉଚ୍ଚମାନର ପୁସ୍ତକ ଗୁଡ଼ିକ ଓଡ଼ିଆ ଭାଷାର ଅନୁବାଦ ଆଦି ମହତ୍ କାର୍ଯ୍ୟ ଦ୍ୱାରା ରାଜାଙ୍କ ସୁଖ୍ୟାତି ବୃଦ୍ଧି ହେଲା। ପଣ୍ଡିତ ସୁଦର୍ଶନ ନ୍ୟାୟରତ୍ନ, ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି, ପଣ୍ଡିତ ଭୁବନେଶ୍ୱର ମିଶ୍ର, କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ, ପ୍ରାବନ୍ଧିକ ବିଶ୍ୱନାଥ କର, ସ୍ୱଭାବ କବି ଗଙ୍ଗାଧର ମେହେର ଓ ଭକ୍ତକବି ମଧୁସୂଦନ ଆଦି ମହାନ୍ ସାରସ୍ୱତ ସାଧକଗଣ ତଥା ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ରାଜା ସାର୍ ବାସୁଦେବ ସୁଢ଼ଳଦେବ, ରାଜକବି ସଚ୍ଚିଦାନନ୍ଦ ଜଳନ୍ଧର ଦେବ ଓ ସ୍ଥାନୀୟ କବି ଓ ଲେଖକ ମାନଙ୍କ ସହ ସାହିତ୍ୟ ଆଲୋଚନା ଦ୍ୱାରା ଦେବଗଡ଼ରେ ସାରସ୍ୱତ ପରିବେଶ ସୃଷ୍ଟି ହେଉଥିଲା। କବିବର ରାଧାନାଥ ବାମଣ୍ଡା ରାଜା ବାସୁଦେବ ସୁଢ଼ଳଦେବଙ୍କ ଭୂୟସୀ ପ୍ରଶଂସା କରି ତାଙ୍କର 'ମହାଯାତ୍ରା' କାବ୍ୟରେ ଲେଖିଛନ୍ତି -

*"ତୁମ୍ଭ ଶୁଭ ଆର୍ବିଭାବେ ହୋଇଛି ଉତ୍କଳେ*
*ଦେବଦୁର୍ଗ ଦେବ ଏବେ ତୀର୍ଥ ସାରସ୍ୱତ*
*ବୁଧ-ହଂସ-କେଳିସର ଅବିଦ୍ୟା ଊଷରେ।"*

ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାର ରାଜଧାନୀ ଦେବଦୁର୍ଗ ଉତ୍କଳର ଉଜ୍ଜୟିନୀ ଆଖ୍ୟା ବହନ କରି ଗର୍ବିତ ହୋଇଥିଲା।

ହିତୈଷିଣୀ ପତ୍ରିକା ସାରସ୍ୱତ ସାଧନାରେ ବ୍ରତୀ ରହି ଉତ୍କଳର ବାଣୀ ଭଣ୍ଡାରକୁ ସମୃଦ୍ଧ ଓ ପରିପୁଷ୍ଟ କରିଥିଲା। ଏହି ପତ୍ରିକାର ସମ୍ପାଦନା ଦାୟିତ୍ୱରେ ଥିଲେ ନୀଳମଣି ବିଦ୍ୟାରତ୍ନ। ଓଡ଼ିଶାର ପ୍ରସିଦ୍ଧ କବି ଓ ଲେଖକ ମାନଙ୍କ ବହୁ ତାତ୍ତ୍ୱିକ ଆଲୋଚନା ଏହି ପତ୍ରିକାରେ ସ୍ଥାନ ପାଉଥିଲା। ଏହାକୁ ଲକ୍ଷ୍ୟକରି ସ୍ୱଭାବ କବି ଗଙ୍ଗାଧର ଲେଖିଲେ -

*"ଉତ୍କଳରେ ହେଲା ନବଯୁଗର ଆରମ୍ଭ*
*ଦିଗେ ଦିଗେ ବ୍ୟାପିଗଲା ସାହିତ୍ୟ ସୌରଭ।"*

ସେହିପରି ବ୍ୟାସକବି ଫକୀରମୋହନ 'ଉତ୍କଳଭ୍ରମଣ'ରେ ଲେଖିଥିଲେ -

*"ଉତ୍କଳର ଉଜ୍ଜୟିନୀ ଜଣା ସର୍ବଲୋକେ*
*ବ୍ୟାପ୍ତ ହେବ ନବନବ ବିବିଧ ପୁସ୍ତକେ।"*

କେବଳ ସ୍ୱନାମଧନ୍ୟ କବି ବା ଲେଖକମାନଙ୍କୁ ନୁହେଁ, ଏପରିକି ନୂତନ ଲେଖକମାନଙ୍କୁ ସାହିତ୍ୟଚର୍ଚ୍ଚାରେ ଉତ୍ସାହିତ କରିବା ଲାଗି ସେମାନଙ୍କ ଲେଖା ମଧ୍ୟ ହିତୈଷିଣୀରେ ସ୍ଥାନିତ ହେଉଥିଲା। ଫଳରେ, ସେମାନେ କାବ୍ୟ, କବିତା, ପ୍ରବନ୍ଧ ରଚନା କରି ଓଡ଼ିଶାର ପ୍ରତିଷ୍ଠିତ କବି ଓ ଲେଖକ ଭାବେ ଉଚ୍ଚତର ଆସନରେ ଆସୀନ ହୋଇ ପାରିଛନ୍ତି। ପ୍ରବୀଣ ଲେଖକ ମାନଙ୍କ ଲେଖା ତଥା ନୀଳମଣୀ ବିଦ୍ୟାରତ୍ନଙ୍କ କୃତବିଦ୍ୟ ସଂପାଦନା ଯୋଗୁଁ ହିତୈଷିଣୀ ଓଡ଼ିଶା ତଥା ଓଡ଼ିଶା ବାହାରର ସାହିତ୍ୟ ପ୍ରେମୀଙ୍କ ଦ୍ୱାରା ବହୁଳ ଭାବେ ସମାଦୃତ ହେଉଥିଲା। ସାର୍ ସୁଢ଼ଳଦେବଙ୍କ ବ୍ୟତୀତ ତାଙ୍କ ସୁପୁତ୍ର ସଚ୍ଚିଦାନନ୍ଦ ଦେବ ଓ ରାଜବଂଶର ବଳଭଦ୍ର ଦେବ ଓ ଜଳନ୍ଧର ଦେବଙ୍କ ଓଡ଼ିଆ ସାହିତ୍ୟ ପ୍ରତି ଅବଦାନ ଅବିସ୍ମରଣୀୟ।

ଏତଦ୍‌ବ୍ୟତୀତ, ହିତୈଷିଣୀରେ ସମକାଳୀନ ସାମାଜିକ ଚିତ୍ର, ଉନ୍ନତ କୃଷିପ୍ରଣାଳୀ, ସମବାୟ ସମିତିର ଆବଶ୍ୟକତା ଓ ଉପକାରିତା, ଶିଳ୍ପ ବାଣିଜ୍ୟ, ପରିବହନ, ନିଶା ନିବାରଣ, ସମାଜର ଅନ୍ଧ ବିଶ୍ୱାସର ନିରାକରଣ, ନାରୀ ଶିକ୍ଷା, ପତିତ ବର୍ଗର ଶିକ୍ଷା ଆଦି ଶିକ୍ଷା ସଂସ୍କାର, ବିଚ୍ଛିନ୍ନାଞ୍ଚଳର ଏକତ୍ରିକରଣ ତଥା ଜାତୀୟ ତଥା ଆନ୍ତର୍ଜାତୀୟ ସମ୍ବାଦମାନ ପ୍ରକାଶ ପାଉଥିଲା।

କୌଣସି ଅନିବାର୍ଯ୍ୟ କାରଣ ହେତୁ ପତ୍ରିକାର ପ୍ରକାଶନ ବନ୍ଦ ହେଲା ୧୯୨୩ ସାଲରେ।

ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ଓ ପ୍ରସାର ତଥା କବି ଓ ଲେଖକମାନଙ୍କୁ ଉତ୍ସାହିତ କରିବା ଲକ୍ଷ୍ୟରେ ରାଜା ସୁଢ଼ଳଦେବ ୧୮୮୫ରେ କଟକରେ ସୁଢ଼ଳପ୍ରେସ ସ୍ଥାପନ କରିଥିଲେ। ଏହି ପ୍ରେସ୍‌ରେ 'ସଂସ୍କାରକ' ଓ 'ସେବକ' ନାମକ ଦୁଇଟି ପତ୍ରିକା ଛାପା କରାଯାଉଥିଲା। ସଂସ୍କାରକ ପତ୍ରିକାରେ କେତେକ ବିବାଦମୂଳକ ଲେଖା ପ୍ରକାଶ ପାଇବାରୁ ପ୍ରତିବାଦ ହୋଇଥିଲା। ଏଣୁ ଏହି ପ୍ରେସକୁ କଟକରୁ ଉଠାଇ ଆଣି ଦେବଗଡ଼ର ଜଗନ୍ନାଥ ବଲ୍ଲଭ ପ୍ରେସ ସହ ସଂଯୋଗ କରାଗଲା। ୧୯୧୧ ସାଲ୍‌ରେ ଇଲେକ୍‌ଟ୍ରିକ୍ ମେସିନ୍ ବସାଇ ପ୍ରେସ୍‌ର ନାମକରଣ କରାଯାଇଥିଲା 'ହିତୈଷିଣୀ ଇଲେକ୍‌ଟ୍ରିକ୍ ମେସିନ୍ ପ୍ରେସ୍'। ସମ୍ବଲପୁର ହିତୈଷିଣୀ ପତ୍ରିକା ୩୦ ମେ, ୧୮୮୯ରେ ଆତ୍ମପ୍ରକାଶ କରି ୧୯୨୩ ଯାଏ ଚାଲିଲା। ଏହି ପତ୍ରିକାରେ

ସାହିତ୍ୟ ଚର୍ଚ୍ଚା ବ୍ୟତୀତ ତତ୍କାଳୀନ ଦେଶ ବିଦେଶର ସମ୍ବାଦ ତଥା ଶାସନ ଓ ସାମାଜିକ ବ୍ୟବସ୍ଥାର ସମାଲୋଚନା ପ୍ରକାଶ ପାଉଥିଲା । ୧୯୨୩ ମସିହା ଠାରୁ ୧୯୪୮ ସାଲ୍ ଯାଏ ଏହି ପ୍ରେସ୍‌ର ନାମ ପରିବର୍ତ୍ତନ କରାଯାଇ ଏହାର ନାମ ହେଲା ଇଲେକ୍‌ଟ୍ରିକ୍ ପେସ୍ । ପରେ ବାମଣ୍ଡାର ଶେଷ ରାଜା ଭାନୁଗଙ୍ଗ ତ୍ରିଭୁବନଦେବଙ୍କ ରାଜତ୍ୱ କାଳରେ ଦେବଗଡ଼ରୁ ଶଙ୍ଖ ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା । ଏହାକୁ ସମ୍ପାଦନା କରୁଥିଲେ ଓଡ଼ିଶାର ସ୍ୱନାମଧନ୍ୟ କବି ଡକ୍ଟର ମାୟାଧର ମାନସିଂହ ।

ହାଇସ୍କୁଲ ଛାତ୍ରମାନଙ୍କୁ ସାହିତ୍ୟ ସାଧନା ଦିଗରେ ଉତ୍ସାହିତ କରିବା ପାଇଁ ରାଜା ସଚ୍ଚିଦାନନ୍ଦଙ୍କ ଉଦ୍ୟମରେ ଏକ ଛାତ୍ରସମିତି ଗଠନ କରାଯାଇଥିଲା । ସେହି ସମିତିର ସଭାପତି ଯୁବରାଜ ସଚ୍ଚିଦାନନ୍ଦ ଦେବ ଏବଂ ସଂପାଦକ ଜଳନ୍ଧର ଦେବ ଥିଲେ । ଏହି ସମିତି ଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଗଦ୍ୟ ସାହିତ୍ୟର ଉନ୍ନତି ସାଧନ । ବିଦ୍ୟାଳୟର ଶିକ୍ଷକଗଣ ସପ୍ତାହର ଆରମ୍ଭରେ ଅର୍ଥାତ୍ ସୋମବାର ଦିନ ପ୍ରବନ୍ଧ ନିର୍ବାଚନ କରି ପିଲାଙ୍କୁ ଦେଉଥିଲେ ଏବଂ ପିଲାମାନେ ସମିତି ସମ୍ମୁଖରେ ନିଜ ଲିଖିତ ପ୍ରବନ୍ଧକୁ ପାଠ କରୁଥିଲେ । ପ୍ରବନ୍ଧ ପାଠ ପରେ ତା ଉପରେ ଆଲୋଚନା, ସମାଲୋଚନା କରାଯାଇ ଶ୍ରେଷ୍ଠ ପ୍ରାବନ୍ଧିକଙ୍କୁ ପୁରସ୍କୃତ କରାଯାଉଥିଲା । ଯାହା ଫଳରେ ବାମଣ୍ଡା ରାଜ୍ୟରେ ବହୁ ଲେଖକ ଓ ପ୍ରାବନ୍ଧିକଙ୍କ ସୃଷ୍ଟି ହୋଇଥିଲା ।

ଓଡ଼ିଶାର ସାହିତ୍ୟ ଜଗତର ଉଜ୍ଜ୍ୱଳତମ ଜ୍ୟୋତିଷ୍କ ରାୟବାହାଦୁର ରାଧାନାଥ ରାୟ ବାମଣ୍ଡା ଦରବାରରୁ 'କବିବର' ଉପାଧି ଲାଭ କରିଥିଲେ ଏବଂ କବିବର ରାଧାନାଥଙ୍କ ରଚିତ ଚିଲିକା, ଯଯାତି କେଶରୀ ପାର୍ବତୀ ଆଦି କାବ୍ୟ 'ସମ୍ବଲପୁର ହିତୈଷିଣୀ'ରେ ମୁଦ୍ରିତ ହୋଇଥିଲା । ରାଧାନାଥ ସ୍ୱୀକାର କରିଥିଲେ ଯେ ବାମଣ୍ଡା ରାଜା ସୁଚ୍ଚଳଦେବଙ୍କ ପ୍ରୋତ୍ସାହନରେ ତାଙ୍କ ସାହିତ୍ୟଜୀବନର ସମୁନ୍ନତ ହୋଇଥିଲା । ଦେବଗଡ଼ର ଏକ ସାରସ୍ୱତ ସମାରୋହରେ ୧୯୧୬ ଫେବୃୟାରୀ ୬ ତାରିଖରେ ବ୍ୟାସକବି ଫକୀର ମୋହନ ସେନାପତିଙ୍କୁ ମଧ୍ୟ 'ସରସ୍ୱତୀ' ଉପାଧି ପ୍ରଦାନ କରାଯାଇଥିଲା । ଏତଦ୍‌ବ୍ୟତୀତ, ବାଲ୍ୟଗୁରୁ ଭୁବନେଶ୍ୱର ବଡ଼ପଣ୍ଡାଙ୍କୁ 'ବକୁଳ କବି', ଦାମୋଦର ମିଶ୍ରଙ୍କୁ 'ପଦ୍ୟାଳଙ୍କାର' ଓ ପଦ୍ମଲୋଚନ ଦାଶଙ୍କୁ 'କଥକ ଶିରୋମଣି' ଉପାଧିରେ ଭୂଷିତ କରି ସମ୍ମାନିତ କରିଥିଲେ ।

ସାର୍ ବାସୁଦେବ ସୁଢ଼ଳଦେବଙ୍କ ସୃଜନାତ୍ମକ ପ୍ରତିଭାର ନିଦର୍ଶନ ମିଳେ ତାଙ୍କ ରଚନାବଳୀରୁ। କବିଙ୍କ 'ଚିତ୍ରୋତ୍ପଳା' ଏକ ଅନବଦ୍ୟ ସୃଷ୍ଟି। ଚିତ୍ରୋତ୍ପଳାରେ ନୌକାବିହାର ବେଳେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟରେ କବି ଅଭିଭୂତ ହୋଇ ପଡ଼ିଛନ୍ତି। ଏହି କାବ୍ୟରେ ଚିତ୍ରୋତ୍ପଳା କୂଳବର୍ତ୍ତୀ ସହର ଓ ମନ୍ଦିର ବର୍ଣ୍ଣନାର ପାଟବତା ପାଠକଙ୍କୁ ମନ୍ତ୍ରମୁଗ୍ଧ କରେ। ସମ୍ବଲପୁର ସହର ଓ ସମଲାଇ ମନ୍ଦିର ସମ୍ବନ୍ଧରେ ବର୍ଣ୍ଣନା କରି କବି ଲେଖିଛନ୍ତି -

*"ଦ୍ୟୁମଣି-ପ୍ରତିମ-ହିରାଜାତ-ହୁଏ କୈବର୍ତ୍ତ ବୁଦ୍ଧି କୌଶଳେ,*
*ସମଲାଇ ପୁର ମଣ୍ଡନ-ଭୂପତି- କପୋଳ ଉପରେ ଝଳେ।*
*ନିର୍ମଳ ଶୀତଳ ପ୍ରବାହ ସ୍ୱର୍ଦ୍ଧିନୀ ସୁପୂଜିତ ରକ୍ତ କାୟା*
*ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ସମଲାଇ ମାହାମାୟା।*
*ଦେବୀ ଅଭିଧାରେ ଖ୍ୟାତ ହୋଇଅଛି ସମ୍ବଲପୁର ସହର*
*ଧେନୁ ଆକାରରେ ଗବ୍ୟୁତି ପ୍ରମାଣେ ନଗର ଅତି ସୁନ୍ଦର।"*

ଏହି କାବ୍ୟରେ 'ସାତକୋଶିଆ ଗଣ୍ଡ' ର ପ୍ରାକୃତିକ ଦୃଶ୍ୟ ଅବଲୋକନ କରି କବି ବର୍ଣ୍ଣନା କରିଛନ୍ତି -

*"ଗାଉଛନ୍ତି ଯହିଁ ପଞ୍ଚମସ୍ୱରରେ କୋକିଳ ମଧୁପ ଆଳୀ,*
*ଭୂଧର ଶିଖରେ ବାଜୁଛି ସୁସ୍ୱରେ ମୟୂର୍-ଗଳ -କାହାଳୀ।*
*କେକୀ ପୁଚ୍ଛ ଟେକି ଶିଖରୀ ବକ୍ଷରେ ନାଚୁଅଛି ଫେରି ଫେରି,*
*ଗିରି କନ୍ଦରରୁ ଉଛୁଳି ପଡୁଛି କୁକ୍କୁଟ-ବଦନ-ଭେରୀ।"*

ନୌକାଯାତ୍ରା ପଥରେ ରାଜା ଯାଇ ପହଞ୍ଚିଲେ କଟକ ନଗରୀ ଉପକଣ୍ଠରେ। କଟକ ନଗରୀ ସନ୍ଦର୍ଶନରେ କବି କଳ୍ପନା ରାଜ୍ୟରେ ବିଚରଣ କରି ଲେଖିଛନ୍ତି -

*"ଶ୍ୱେତାଙ୍ଗ ସଦନ ଶୁଭ୍ର ଅଟ୍ଟାଳିକା ମଣ୍ଡିତ ତୀର ବିପଣୀ*
*ବିଭବ ସମ୍ଭାରେ ନଗର ହୋଇଛି ଅମରାବତୀ-ବରଣୀ*

* * * *

*ତୋ ତୀର ବିହାରି ରାୟ କବିବର ଚିନ୍ତାଶୀଳ ଅବିରତେ*
*'ମହାନଦୀ ନାମ ରହିଲା ଗୁପତେ' ବୋଲି ଭାବୁଛନ୍ତି ତୋତେ।"*

ରାଜା ବାସୁଦେବ ପ୍ରକୃତି କବି ରାଧାନାଥଙ୍କ ସଂପର୍କରେ ଆସି 'ଚିତ୍ରୋତ୍ପଳା' କାବ୍ୟରେ ଉଚ୍ଚକୋଟୀର ପ୍ରକୃତି ଚିତ୍ରଣ କରିଛନ୍ତି।

କବି ବାସୁଦେବଙ୍କ ଅନ୍ୟ ଏକ କାବ୍ୟ 'ବୀରବାମା' ଜାତୀୟ ଭାବନାର ଏକ ନିଛକ ଚିତ୍ର। ଏଥିରେ ରାଣୀ ଲକ୍ଷ୍ମୀବାଈଙ୍କ ବୀରତ୍ୱ କାହାଣୀ ଏବଂ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ ଆଦିର ବିସ୍ତୃତ ବର୍ଣ୍ଣନା କରାଯାଇଛି।

'ଜହ୍ନମାମୁଁ' କବିତା ଗୁଡ଼ିକ ସରଳ ଓ ସାବଲୀଳ ଭାଷାରେ ଲେଖାଯାଇଛି। ଶିଶୁ ସାହିତ୍ୟଧର୍ମୀ କବିତାଗୁଡ଼ିକ ଶିଶୁମାନଙ୍କୁ ଆକର୍ଷଣ କରୁଥିବା 'ଜହ୍ନମାମୁଁ'ଙ୍କ ବର୍ଣ୍ଣନା ଉପରେ ପର୍ଯ୍ୟବସିତ। କବିତା ଗୁଡିକରେ ବର୍ଣ୍ଣନାଚାତୁରୀ ଅତି ଚମତ୍କାର ହୋଇଛି। ଶିଶୁମାନଙ୍କ କଳ୍ପନାଶକ୍ତିର ଉଦ୍ରେକ କରିବାରେ କବିତା ଗୁଡ଼ିକ ଖୋରାକ ଯୋଗାଏ। ଦୃଷ୍ଟାନ୍ତ ସ୍ୱରୂପ -

*"ଦିନେ ଉପବନେ ଦେଖିଲି ଯାଇ,*<br>
*ଅତି ସରାଗରେ ଫୁଟିଛି ଜାଇ*<br>
*ତୋଳିବାକୁ ମନ ହୋଇଲା ବାଇ*<br>
*ସରଭସ ହୋଇ ଗଲି ମୁଁ ଧାଇଁ*<br>
*ଦେଖିଲି ଗଛର*<br>
*ଛିଦ୍ରରୁ ପଡିଛି ମାମୁଁର କର।୩।"*

*(ବାମଣ୍ଡାଧିପତି ସୁଢ଼ଳଦେବ)*

ଏତଦ୍ ବ୍ୟତୀତ, ରାଜା ସୁଢ଼ଳଦେବ 'ଜଣାଣ', 'ବସନ୍ତ ବର୍ଣ୍ଣନା' ଆଦି ବହୁ କବିତା ଲେଖି ଉତ୍କଳର ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି। ରାଜା ଜଣେ ଉଚ୍ଚକୋଟୀର ସଂସ୍କୃତଜ୍ଞ ଥିଲେ, ତାର ପ୍ରମାଣ ଦିଏ ତାଙ୍କ ରଚିତ 'ଅଳଙ୍କାର ବୋଧଦୟ'।

କଳା ଓ ସାହିତ୍ୟ ପ୍ରେମୀ ରାଜା ସଚ୍ଚିଦାନନ୍ଦ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଜଣେ ଉପଯୁକ୍ତ ଦାୟାଦ। ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ଛାତ୍ର ଜୀବନରୁ ହିଁ ପରିଲକ୍ଷିତ ହୋଇଥିଲା। ତାଙ୍କ ସାରସ୍ୱତ ଜ୍ଞାନକୁ ପରିବର୍ଦ୍ଧିତ ଓ ପରିମାର୍ଜିତ କରିବାକୁ ସହାୟକ ହୋଇଥିଲେ ତାଙ୍କ ଶିକ୍ଷକ ଗଣ। ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା। ଫଳରେ, ତାଙ୍କର ଭାଷା ଜ୍ଞାନ ବହୁଗୁଣିତ

ହୋଇ ପାରିଥିଲା । ରାଜକୁମାର ହାଇସ୍କୁଲରେ ଅଧ୍ୟୟନ କରିବା ବେଳେ ସେ ଆଲୋଚନା ସଭା ଗଠନ କରି ନିଜେ ସଭାପତି ହୋଇଥିଲେ ଏବଂ ଜଳନ୍ଧର ଦେବଙ୍କୁ ସଂପାଦକ ପଦବୀରେ ନିଯୁକ୍ତ କରିଥିଲେ । ରାଜକବି ସଚ୍ଚିଦାନନ୍ଦ ତାଙ୍କର ମାତ୍ର ଚଉରାଳିଶ ବର୍ଷ ଜୀବନକାଳ ମଧ୍ୟରେ ଉତ୍କଳର ସାରସ୍ୱତ ଭଣ୍ଡାରକୁ ତାଙ୍କର ଅବଦାନ କଳ୍ପନାତୀତ । ତାଙ୍କର ସମସ୍ତ ରଚନାବଳୀକୁ ଏହି ପ୍ରବନ୍ଧରେ ସନ୍ନିବଦ୍ଧ କରିବା ସମ୍ଭବ ନୁହେଁ । କେବଳ କବିଙ୍କ ବହୁଳ ଭାବେ ଆଦୃତ କେତୋଟି କାବ୍ୟକୁ ଆଲୋଚନାର ପରିସରଭୁକ୍ତ କରାଯାଇଛି ।

'ପ୍ରକୃତି' କାବ୍ୟରେ ସୃଷ୍ଟିର ରହସ୍ୟ ବୈଜ୍ଞାନିକ ଚିନ୍ତାଧାରା ଉପରେ ଆଧାରିତ । ଅମିତ୍ରାକ୍ଷର ଛନ୍ଦରେ ରଚିତ ହୋଇଛି ଏହି ସୁଦୀର୍ଘ କାବ୍ୟଟି । ରାଜକବି ଲେଖିଛନ୍ତି ପୂର୍ବରୁ କେବଳ ଥିଲା ଶୂନ୍ୟ ମହାଶୂନ୍ୟ-

*"କେବଳ ଥିଲାରେ ସେହି ଅନନ୍ତ ମହିମା*
*ଶକ୍ତିରୂପେ ପରମାଣୁ ପୁଞ୍ଜେ ପ୍ରକୃତିର;*
*ପରମାଣୁ ସଂଗେ ମିଶି ଏ ବିଶ୍ୱ ଶକତି*
*ଜନ୍ମାଇଲା ନୀହାରିକା ଜ୍ୟୋତିଃପୁଞ୍ଜ ରୂପେ ।"*
*(ଭ୍ରୂଣାବସ୍ଥା ଯେଣୁ ଏହା ବିଶ୍ୱ ପ୍ରକୃତିର !)*

ପୃଥିବୀ, ଗ୍ରହ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ନଦୀ, ପର୍ବତ, ପଶୁପକ୍ଷୀ ଓ ସରୀସୃପ ଆଦିର ସୃଷ୍ଟି ପରେ ମଣିଷର ସୃଷ୍ଟିକୁ ବିଚାର କରି କାବ୍ୟରେ ସ୍ଥାନିତ କରାଯାଇଛି -

*"କ୍ରମ -ବିକାଶର ସୂତ୍ରେ ବର୍ଷ ବର୍ଷ ପରେ*
*ଦେଖିଲୁ ସର୍ବାଗ୍ରେ ତୁହି ମାନବ ଉଦ୍ଭବ ।*

କବି ପ୍ରକୃତିର ବିମୋହିନୀ ଶକ୍ତିରେ ଆକର୍ଷିତ ହୋଇ 'ବସନ୍ତ ନିବାସ' ନିର୍ମାଣ କରିବା ସୂଚନା ଦେଇଛନ୍ତି ତାଙ୍କ କାବ୍ୟରେ -

*"ଚିରାକାଂକ୍ଷୀ ମୁହିଁ ତୋର ସହବାସ ଲାଗି*
*ରଚିଲି ଉତ୍ସଂଗେ ତେଣୁ ବସନ୍ତ ନିବାସ ।"*

'ବୀରଗାଥା' ରାଜକବିଙ୍କ ଏକ ଶ୍ରେଷ୍ଠ କୃତି କହିଲେ ଅତ୍ୟୁକ୍ତି ହେବନାହିଁ। ଏହା ଏକ ଐତିହାସିକ କାବ୍ୟ ହେଲେ ମଧ୍ୟ କାବ୍ୟର ସୌଷ୍ଠବତା ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଛି। ଏଥିରେ ଗଙ୍ଗବଂଶର କୀର୍ତ୍ତି, ବିଜୟଗାଥା ବର୍ଣ୍ଣିତ ହୋଇଛି –

*"ଆଜି ଗଙ୍ଗ ପଞ୍ଚଭ୍ରାତା ସମରେ ଯେସନ*
*ଯୁଝୁଛନ୍ତି ଅତିଦର୍ପେ କରି ପ୍ରାଣପଣ,*
*ପ୍ରଳୟ-ସମୟ-ଶଂସୀ ଇରମ୍ମଦ କରେ !*
*ଗାଙ୍ଗେୟ-ଶତଘ୍ନୀ-ଶବ୍ଦ ପ୍ରଭଇ ଗମ୍ଭୀରେ।"*

ଚାଲୁକ୍ୟସେନା ଯୁଦ୍ଧରେ ପରାଜିତ ହୋଇ ଅସ୍ତ୍ର ସମ୍ବରଣ କଲେ। ତାକୁ କବି କବିତାରେ ବର୍ଣ୍ଣନା କରି ଲେଖିଛନ୍ତି –

*"କରି ଅସ୍ତ୍ର ସମ୍ବରଣ ବୈର ପରିହରି*
*ଭସାଇ ଆଶାର – ସ୍ରୋତେ ମନୋରଥ ତରୀ*
*ନିବର୍ତ୍ତିଲେ ଯୁଦ୍ଧକ୍ଷେତ୍ରୁ ସୈନିକ ସେନାନୀ*
*ସହସାରେ ନିର୍ବାପିଲା ପ୍ରଚଣ୍ଡ ଯୁଦ୍ଧାଗ୍ନି।"*

ଏହି କାବ୍ୟରେ ଗଙ୍ଗ, ଚାଲୁକ୍ୟ ଓ କଦମ୍ବ ବଂଶର କୀର୍ତ୍ତିକଳାପ ଓ ବିଜୟଗାଥା ଓଜସ୍ୱିନୀ ଭାଷାରେ ବର୍ଣ୍ଣନା କରି କବି 'ଆମନ୍ତ୍ରଣ' କବିତାରେ ଲେଖିଛନ୍ତି –

*"ଚାଲୁକ୍ୟ, ଗାଙ୍ଗେୟ, ମୌର୍ଯ୍ୟ ସହିତ ନୃମଣି,*
*ଦାକ୍ଷିଣାତ୍ୟେ ଏକତ୍ରରେ ବିଜୟ ସାରଲ୍ୟେ*
*ବହିଗଲା କେତେକାଳ, କିନ୍ତୁ ଆହେ ଦେବ,*
*ମିତ୍ରଭାବ ସୌଜନ୍ୟରେ ଏକତ୍ର ବନ୍ଧନ,*
*ନ ଛାଡ଼ିଲା କେବେ ତହୁଁ,*
*କି ଶୁଭ ମୁହୂର୍ତ୍ତେ ପଶିଲ ଏ ଖଣ୍ଡାଧାର ଟଙ୍କ ଘନବନେ; ..... ।"*

ରାଜା ସଚ୍ଚିଦାନନ୍ଦ ମାୟାଶବରୀ, ଅନଙ୍ଗ, ଭୀଷ୍ମ, ରାସରହସ୍ୟ, ଅଳଙ୍କାର ସାର, ଚନ୍ଦ୍ରଦୂତ, ଜହ୍ନମାମୁଁ, ପ୍ରେମ ସ୍ତବକ, ଚିତ୍ର, ସୁନ୍ଦରୀ ଚଉତିଶା, ଯୌନ-ନିର୍ବାଚନ, ବୈଦିକ ପ୍ରକୃତି, ବସନ୍ତ ନିବାସ, ବୃଷ୍ଟି ବିଜ୍ଞାନ ଏବଂ ଭ୍ରମଣ ବୃତାନ୍ତ ଆଦି ବହୁ ସୃଷ୍ଟି ସମ୍ଭାର ଉତ୍କଳ ବାଣୀ ଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି।

## ବଳଭଦ୍ର ଦେବ (୧୮୭୮ - ୧୯୩୭)

ବଳଭଦ୍ର ଦେବ ହେଉଛନ୍ତ ସୁଡ଼ଳ ଦେବଙ୍କ ଦ୍ୱିତୀୟ ପୁତ୍ର। ଜଣେ ମୌଳିକ କାବ୍ୟ ସ୍ରଷ୍ଟା ଭାବେ ସେ ଋତୁ ସଂହାର, ରଘୁବଂଶ, କାଦମ୍ବରୀ କାବ୍ୟର ଅନୁବାଦ କରିଛନ୍ତି। ଏତଦ୍‌ବ୍ୟତୀତ, ସୁନାମୁଣ୍ଡା (୧୯୧୫) ଓ ବାଲ୍ୟସ୍ମୃତି (୧୯୩୨) କାବ୍ୟରେ ତାଙ୍କ ପରିଚେତନାର ସମ୍ୟକ ସୂଚନା ମିଳେ। ଯଥା -

*"ଛବିଳ ନିସର୍ଗ- ଲକ୍ଷ୍ମୀ ଦେବୀ ଖେଷା- ଭୂଷା*
*ତୁହି ସୁନାମୁଣ୍ଡା ! ସର୍ବ ସୁଷମା ମଞ୍ଜୁଷା*
*ଦୃଶ୍ୟରାଜି ସମାକୀର୍ଣ୍ଣ ମନୋଜ୍ଞ କାନ୍ତାର*
*ଶସ୍ୟ ଉତ୍ପାଦନକ୍ଷମ- ପ୍ରଶସ୍ତ କେଦାର।*
*ଅନାବିଳ ଜଳେ ପୂର୍ଣ୍ଣ ଦୀର୍ଘ ସରୋବର*
*ମର୍କତ ମଣ୍ଡପାକୃତି ଅନୁଚ୍ଚ ଭୂଧର।" (ସୁନାମୁଣ୍ଡା)*

ବାସେଳୀ ଲୀଳା, ଶିବରାତ୍ରୀ, ଚଞ୍ଚରୀକା, ପାର୍ବତୀ ଉତ୍ତରାର୍ଦ୍ଧ ଓ ଭ୍ରାନ୍ତିହିଲ୍ଲୋଳ କାବ୍ୟ ସହ ଅନ୍ୟାନ୍ୟ ବହୁ କ୍ଷୁଦ୍ର କାବ୍ୟର ସେ ହେଉଛନ୍ତି ରଚୟିତା। ପିତା-ପୁତ୍ରୀଙ୍କ ପାପ-ପ୍ରଣୟକୁ ଭିତ୍ତି କରି କବିବର ରାଧାନାଥଙ୍କ ରଚିତ "ପାର୍ବତୀ" କାବ୍ୟର ପ୍ରତିବାଦ କରି ସେ ଲେଖିଛନ୍ତି "ପାର୍ବତୀ ଉତ୍ତରାର୍ଦ୍ଧ"। ରାଧାନାଥ ଯୁଗର କାବ୍ୟାକାଶରେ ସେ ଏକ ଅନନ୍ୟ ଜ୍ୟୋତିଷ୍କ।

## ଜଳନ୍ଧର ଦେବ (୧୮୭୨ - ୧୯୫୨)

ଜଳନ୍ଧର ଦେବ ଓଡ଼ିଆ ସାହିତ୍ୟର ଜଣେ ଧୂରୀଣ ସ୍ରଷ୍ଟା ରୂପେ ଓଡ଼ିଶାରେ ସୁପରିଚିତ। ନିଜସ୍ୱ ପ୍ରତିଭା-ଦୀପ୍ତିରେ ସେ ଓଡ଼ିଆ ସାହିତ୍ୟକୁ କରିଛନ୍ତି ଭାସ୍ୱର ଓ ଋଦ୍ଧିମନ୍ତ। ଜଳନ୍ଧରଙ୍କ ରଚିତ - ବେଦ ଓ ହିନ୍ଦୁ ଧର୍ମ, ଭାଗବତ ଗୀତା, ମହାଭାରତ, ରାମାୟଣ ପ୍ରଭୃତି ପ୍ରବନ୍ଧରେ କୁସଂସ୍କାରଛନ୍ନ ଆଖ୍ୟାନ ସମୂହକୁ ସେ ଗଭୀରଭାବେ ଅନୁଧ୍ୟାନ କରି ସମାଲୋଚନା କରିଛନ୍ତି। ତାଙ୍କ ମତରେ ପୌରାଣିକ ବିଷୟ ଯୁଗର ପରିବର୍ତ୍ତିତ ଧାରାକୁ ଅନୁସରଣ କରି ପେଆରାଣିକ ବିଷୟକୁ ଲେଖାଯିବା ଉଚିତ। ଜଣେ ସ୍ୱାଧୀନ ଚିନ୍ତକ ଭାବେ ଓଡ଼ିଆ ସାହିତ୍ୟରେ ସେ ସ୍ୱୀକୃତ। ଧର୍ମ ଶାସ୍ତ୍ର ଅନ୍ତରାଳରେ ମାନବସେବା ଉପରେ ସେ ବିଶେଷ ଗୁରୁତ୍ୱ ଦେଇଥିଲେ। ତାଙ୍କରି ଭାଷାରେ

*"ପ୍ରଥମରୁ ଯେବେ ଭାରତବାସୀର ନରନାରାୟଣ ମଧ୍ୟରେ ଅଭେଦ ଜ୍ଞାନ ଜନ୍ମିଥାନ୍ତା, ତାହେଲେ ଜାତିର ଅସାଧାରଣ ଉପକାର ହୋଇଥାନ୍ତା ଏବଂ 'ସକଳ ଦେହେ ନାରାୟଣ' ଭାଗବତର ଏହି ପଦଟି ସାର୍ଥକ ହୋଇଥାନ୍ତା। ନରହିଁ ସେବ୍ୟ, ନରହିଁ ପୂଜ୍ୟ - ନରର ପୂଜାହିଁ ନାରାୟଣର ପୂଜା, ନର ସେବାହିଁ ନାରାୟଣ ସେବା। ନରର ଉନ୍ନତି ଇଚ୍ଛା ହିଁ ନାରାୟଣ ଧ୍ୟାନ - ନରର ଚରମୋନ୍ନତି ମୁକ୍ତି, ନରର ଅବନତି ଅଧୋଗତି।"*

*(ନାରାୟଣ)*

ଜଳନ୍ଧର ଦେବ ଆଜୀବନ ଜାତିଭେଦ, ବାଲ୍ୟବିବାହ ବିରୁଦ୍ଧରେ ଓ ଯୁବତୀ ବିବାହ ସପକ୍ଷରେ ସଂଗ୍ରାମ କରିଥିଲେ। ତାଙ୍କ ଦ୍ୱାରା ରଚିତ 'ବିବାହ ବିଚାର' (୧୯୨୯) ଲେଖାରୁ ଏହି ପ୍ରସଙ୍ଗର ପ୍ରମାଣ ମିଳେ। ବାର, ନକ୍ଷତ୍ର, ଧ୍ରୁବ, ଜ୍ୟୋତିର୍ବିଦ୍ୟାର ଜୟ ଆଦି ପ୍ରବନ୍ଧ ତାଙ୍କର ଜ୍ୟୋତିର୍ବିଦ୍ୟାର ଜ୍ଞାନକୁ ପ୍ରକାଶ କରେ। ଏତଦ୍‌ବ୍ୟତୀତ ନିଜର ଭ୍ରମଣାନୁଭୂତିକୁ ସେ 'ଡ଼ାଏରୀର କିୟଦଂଶ' ପୁସ୍ତକରେ ଲିପିବଦ୍ଧ କରିଛନ୍ତି। ତାଙ୍କ ରଚିତ ବିଚ୍ଛେଦ, ରାଣାସଙ୍ଗଙ୍କ ମହାପ୍ରୟାଣ, ଉଦୟସିଂ ଓ ଦେବସଭା ପ୍ରଭୃତି ନାଟକ ନାଟ୍ୟ ପ୍ରତିଭାର ଅପୂର୍ବ ପରିଚୟ ପ୍ରଦାନ କରେ। ତାଙ୍କ ରଚିତ ଅସ୍ପୃଶ୍ୟା, ମେଘ ଭାବନା, ନିବେଦନ, ଉତ୍କଳଭାରତୀଙ୍କ କ୍ଷୋଭ ପ୍ରଭୃତି କବିତା ତାଙ୍କର କାବ୍ୟଆତ୍ମାର ରସାଳ ବ୍ୟଞ୍ଜକ।

ଓଡ଼ିଆ ସାହିତ୍ୟରେ ଆଦିବାସୀ ଓ ନିମ୍ନବର୍ଗର ସଂସ୍କୃତିକୁ ନେଇ କ୍ଷୁଦ୍ରଗଳ୍ପ ରଚନାର ଆଦ୍ୟ ଦୃଷ୍ଟାନ୍ତ ଜଳନ୍ଧରଙ୍କ ଅତିଥି ସତ୍କାର, ଗୌରୀ ଓ କାହ୍ନୁ, ବିବାହ ଭୋଜି, ଶେଷ ବଳୀ, ଏହାକି ଆତ୍ମହତ୍ୟା ପ୍ରଭୃତି କ୍ଷୁଦ୍ରଗଳ୍ପ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ପରିଚାଳନା କରି ନିଜର ସ୍ୱତନ୍ତ୍ର ଚିନ୍ତାଧାରାର ପରିପ୍ରକାଶ ଘଟାଇଛନ୍ତି ଜଳନ୍ଧର ଦେବ। ସେ ଜଣେ ସମାଜ ସଂସ୍କାରକ। ସାହିତ୍ୟ ମାଧ୍ୟମରେ ସମାଜର କୁସଂସ୍କାରକୁ ମୂଳୋତ୍ପାଟନ କରିବା ତାଙ୍କର ଲକ୍ଷ୍ୟ।

ସାର୍ ବାସୁଦେବ ସୁଢ଼ଳଦେବ ଓ ରାଜକବି ସଚ୍ଚିଦାନନ୍ଦ ପ୍ରମୁଖ କେବଳ ନିଜ ସାରସ୍ୱତ ପ୍ରତିଭାର ପରିଚୟ ଦେଇନାହାନ୍ତି, ସେମାନେ ଜୀବନକାଳ ମଧ୍ୟରେ ବହୁ କବି ଓ ସାହିତ୍ୟିକ ସୃଷ୍ଟି କରିଛନ୍ତି। ଯେହେତୁ ସମସ୍ତଙ୍କ ନାମ ଏଠାରେ ଉଲ୍ଲେଖ

କରିବା ସମ୍ଭବ ନୁହେଁ, କେତେକ ଲବ୍ଧପ୍ରତିଷ୍ଠ କବିଙ୍କ ନାମ ନିମ୍ନରେ ଉଲ୍ଲେଖ କରାଯାଇଛି। ସେମାନେ ହେଲେ ରାଜୀବଲୋଚନ ଦେବ, ଲାଲ ଲଳିତ ମୋହନ ଦେବ, ବୃନ୍ଦାବନ ନାଥ ଶର୍ମା, ରତ୍ନାକର ଶର୍ମା, ନାରାୟଣ ଚନ୍ଦ୍ର ଦାଶ, ବ୍ରଜବନ୍ଧୁ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ହରିହର ମହାପାତ୍ର, ଦୀନବନ୍ଧୁ ପ୍ରଧାନ, ଦୀନବନ୍ଧୁ ଗଡ଼ନାୟକ, ଶଶିଭୂଷଣ ଦେବ, ସୁଲୋଚନା ଦେଇ, ବିଶ୍ୱନାଥ ଶତପଥି, ବନମାଳୀ ଗୁରୁ ଓ ଦିବ୍ୟରାଜ ସିଂ ପ୍ରମୁଖ। ଏମାନଙ୍କ ବ୍ୟତୀତ ବାମଣ୍ଡାର ଅନେକ ଲେଖକ, କବି ଓ ପ୍ରାବନ୍ଧିକ ସେମାନଙ୍କ ରଚନାବଳୀରେ ଉତ୍କଳର ବାଣୀଭଣ୍ଡାରକୁ ପୁଷ୍ଟ କରିଛନ୍ତି।

## ଭାଷା ଆନ୍ଦୋଳନରେ ବାମଣ୍ଡାର ଭୂମିକା

ଭାଷା ମଣିଷ ମନର ଭାବ ପ୍ରକାଶ ପାଇଁ ଏକ ମାଧ୍ୟମ ଯାହାର ଉପାଦେୟତା ଉପଲବ୍ଧ ହୁଏ ଜାତୀୟ, ପ୍ରଦେଶିକ ସ୍ତରରେ। ମଣିଷ ମଣିଷ ମଧ୍ୟରେ ଥିବା ବ୍ୟବଧାନକୁ ଯୋଡିବାରେ ଭାଷାର ଅବଦାନ ଅତି ମହତ୍ୱପୂର୍ଣ୍ଣ। ଏଣୁ ଏକ ଭାଷାଭାଷୀ ବ୍ୟକ୍ତିଙ୍କୁ ବିଖଣ୍ଡିତ କରି ନିରଙ୍କୁଶ ଶାସନ କରିବା ପ୍ରତ୍ୟେକ ଶାସକଙ୍କ ଲକ୍ଷ୍ୟ। ଏହିପରି ଦିନେ ଓଡ଼ିଶା ବିଖଣ୍ଡିତ ହୋଇଥିଲା ଇଂରେଜ ଶାସକଙ୍କ ଚକ୍ରାନ୍ତରେ। ଓଡ଼ିଶାର ଉପକୂଳ ଅଞ୍ଚଳ ଥିଲା ବଙ୍ଗଳାରେ, ଦକ୍ଷିଣାଞ୍ଚଳ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଓ ପଶ୍ଚିମାଞ୍ଚଳ ମଧ୍ୟପ୍ରଦେଶରେ। ଏପରିଭାବେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକେ ତିନୋଟି ପ୍ରଦେଶର ଶାସକମାନଙ୍କ ତଳେ ରହି ତିନୋଟି ସ୍ୱତନ୍ତ୍ର ଭାଷା ଶିକ୍ଷା କରିବା ପାଇଁ ବାଧ୍ୟ ହେଲେ। ସ୍କୁଲ ମାନଙ୍କରେ ପାଠ୍ୟ ପୁସ୍ତକ ପ୍ରଚଳିତ ହେଲା ଅଣଓଡ଼ିଆ କର୍ମଚାରୀଙ୍କ ପରାମର୍ଶରେ। ସାରା ଦେଶରେ ଇଂରାଜୀ ଭାଷା ଶିକ୍ଷା ଉପରେ ପ୍ରାଧାନ୍ୟ ଦେଇ ଇଂରାଜୀ ମାଧ୍ୟମ ସ୍କୁଲ ଖୋଲାଗଲା ଯଦିଓ ଦେଶୀୟ ବିଦ୍ୟାଳୟ ସ୍ଥାପିତ ହୋଇ ପିଲାଙ୍କୁ ଓଡ଼ିଆ ପଢ଼ାଗଲା କିନ୍ତୁ ସରକାରଙ୍କ ଅଧୀନରେ ଚାକିରୀ କରିବାରେ ଇଂରାଜୀ ମାଧ୍ୟମରେ ପଢ଼ିଥିବା ପିଲାଙ୍କୁ ନିଯୁକ୍ତି କ୍ଷେତ୍ରରେ ପ୍ରାଧାନ୍ୟ ଦିଆଗଲା। ଫଳରେ ପିଲାମାନେ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢ଼ିବା ପାଇଁ ଆଗ୍ରହାନ୍ୱିତ ହେଲେ।

ସମ୍ବଲପୁରରେ ଅବସ୍ଥାପିତ ହିନ୍ଦିଭାଷୀ କର୍ମଚାରୀଙ୍କ ପ୍ରରୋଚନାରେ ମଧ୍ୟପ୍ରଦେଶର ଶାସନ ମୁଖ୍ୟ ଜନ୍ ଉଡ୍‌ବର୍ଣ୍ଣ ସମ୍ବଲପୁର, ବାମଣ୍ଡା, ରେଢ଼ାଖୋଲ, ସୋନପୁର, ବଲାଙ୍ଗିର ଓ କଳାହାଣ୍ଡିର କୋର୍ଟ କଚେରୀରେ ଓଡ଼ିଆ ଭାଷା ସ୍ଥାନରେ ହିନ୍ଦୀ ଭାଷା ପ୍ରଚଳନ

କରିବା ପାଇଁ ନୀତିଗତ ଭାବେ ସ୍ଥିର କଲେ ୧୮୯୫ ସାଲ୍‌ରେ। ଏହାର ବିରୋଧ ଆରମ୍ଭ ହେଲା ବାମଣ୍ଡାରୁ ରାଜା ବାସୁଦେବ ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ।

ହିନ୍ଦୀ ଭାଷା ବିରୋଧି ଆନ୍ଦୋଳନର ପ୍ରମୁଖ ଭୂମିକା ଗ୍ରହଣ କଲା ବାମଣ୍ଡାରୁ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ'। ହିତୈଷିଣୀ ଜନ୍ମନିଏ ୧୮୮୯ ସାଲ ମେ' ୩୦ ତାରିଖରେ। ଏହି ପତ୍ରିକାର ସମ୍ପାଦନା ଦାୟିତ୍ୱରେ ଥିଲେ ରାଜକୁମାର ହାଇସ୍କୁଲର ଶିକ୍ଷକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ। ହିନ୍ଦୀ ଭାଷା ପ୍ରଚଳନକୁ ବିରୋଧ କରି କବି ଗଙ୍ଗାଧର ତା.୩.୧୦.୧୮୯୪ରେ ଲେଖିଲେ -

*"ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି*
*କରିବ ପରା ରାଜତ୍ୱ*
*ମୋ ଆଶା କାନନ ଭସ୍ମରାଶି ହେବ*
*ତା ନବ ଉଦ୍ୟାନେ ଖତ।*
*ଉପମାତା ଆସି ଗର୍ଭଧାରିଣୀର*
*ମସ୍ତକେ ଚରଣ ଦେବ*
*ଏ ଦଶା ଦେଖିଲେ କେଉଁ ସନ୍ତାନର*
*ମନରେ ଦୁଃଖ ନ ହେବ ?"*

ସ୍ୱଭାବକବି ଗଙ୍ଗାଧରଙ୍କ ଏହି ଲେଖା ଭାଷା ଆନ୍ଦୋଳନରେ ସହଯୋଗ କରିବା ପାଇଁ ଜନସାଧାରଣଙ୍କୁ ଖୋରାକ ଯୋଗାଇ ଦେଲା। ହିନ୍ଦୀଭାଷା ପ୍ରଚଳନ ବିରୋଧରେ ଶ୍ରୀଧରଣୀଧର ମିଶ୍ର ଏକ ବିରାଟ ସଭାରେ ସ୍ମାରକପତ୍ର ଗୃହୀତ କରାଇ ବଡଲାଟ ଲର୍ଡ କର୍ଜନଙ୍କ ନିକଟକୁ ପଠାଇଥିଲେ। ଏହି ସ୍ମାରକପତ୍ରରେ ସମ୍ବଲପୁରର ୨୩୬୨ ଜଣ ସ୍ୱାକ୍ଷର କରିଥିଲେ। ଚନ୍ଦ୍ରଶେଖର ବେହେରା ୧୮୯୫ ଜୁନ୍ ୨୦ ତାରିଖରେ ଧରଣୀଧର ମିଶ୍ରଙ୍କ ଏହି ସ୍ମାରକପତ୍ରକୁ ଉତ୍କଳ ସଭାରେ ଅନୁମୋଦନ କରାଇଲେ ଏବଂ ସରକାରଙ୍କ ନିକଟକୁ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ପଠାଇଲେ। ସ୍ମାରକପତ୍ର ଦେବାର କିଛି ଫଳାଫଳ ହେଲା ନାହିଁ। ଭାରତ ସରକାର ମଧ୍ୟପ୍ରଦେଶ ସରକାରଙ୍କ ନିଷ୍ପତ୍ତିକୁ ଅନୁମୋଦନ କଲେ। ୧୮୯୬ ଜାନୁୟାରୀ ୧ ତାରିଖରୁ କୋର୍ଟକଚେରୀରେ ହିନ୍ଦୀଭାଷା ପ୍ରଚଳନ କରାଗଲା। ଏଥିରେ ଜନସାଧାରଣ ତୀବ୍ର ଅସନ୍ତୋଷ ପ୍ରକାଶ

କଲେ । ୧୯୦୧ ସାଲ୍‌ରେ ଦ୍ୱିତୀୟ ପର୍ଯ୍ୟାୟ ଆନ୍ଦୋଳନ ଆରମ୍ଭ ହେଲା । ମଦନମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସଙ୍କ ନେତୃତ୍ୱରେ ଏହି ନେତୃବୃନ୍ଦ ୧୯୦୧ ଜୁଲାଇ ୨୯ ତାରିଖରେ ନାଗପୁର ଯାଇ ଚିଫ୍ କମିଶନର ଏଣ୍ଡ୍ରୁ ଫ୍ରେଜରଙ୍କୁ ହିନ୍ଦୀଭାଷା ପ୍ରଚଳନ ରେ ଜନସାଧାରଣଙ୍କ କି ଅସୁବିଧା ହେବ ଜଣାଇଲେ । କମିଶନର ଏ ବିଷୟରେ ବିଚାର କରି ଯାହା ନିଷ୍ପତ୍ତି ନିଆଯିବ ପରେ ଜଣାଇ ଦେବାକୁ ପ୍ରତିନିଧିମାନଙ୍କୁ ପ୍ରତିଶ୍ରୁତି ଦେଲେ । ପୁନଶ୍ଚ, ୧୯୦୧ ସାଲ୍ ଅଗଷ୍ଟ ମାସରେ ବଡଲାଟ୍ ଲର୍ଡ କର୍ଜନଙ୍କୁ ଏ ବିଷୟରେ ଅବଗତ କରାଇବା ପାଇଁ ମଦନମୋନହ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସ ଓ ଶ୍ରୀପତି ମିଶ୍ର ସିମ୍‌ଲା ଯାତ୍ରା କଲେ । ବଡଲାଟ ଏକ ପୂର୍ବ ନିର୍ଦ୍ଧାରିତ ଶିକ୍ଷା ସମିତିର କାର୍ଯ୍ୟକ୍ରମରେ ବ୍ୟସ୍ତ ରହିଥିବାରୁ ସେମାନେ ତାଙ୍କୁ ସାକ୍ଷାତ କରି ନ ପାରି କେବଳ ମଧ୍ୟପ୍ରଦେଶ ଚିଫ୍ ସେକ୍ରେଟାରୀଙ୍କ ସହ ସାକ୍ଷାତ କରି ତାଙ୍କ ପରାମର୍ଶ କ୍ରମେ ସମ୍ବଲପୁର ଫେରିଆସିଲେ ।

୧୯୦୧ ସେପ୍ଟେମ୍ବର ମାସରେ ଫ୍ରେଜର ସାହେବ ସମ୍ବଲପୁର ଆସି ଜନସାଧାରଣଙ୍କ ଦାବି ସମ୍ବନ୍ଧରେ ସହର ଓ ଗ୍ରାମାଞ୍ଚଳ ବୁଲି ଅନୁସନ୍ଧାନ କଲେ ଏବଂ ନିଜର ଅନୁକୂଳ ମତାମତ ବଡଲାଟଙ୍କୁ ଜଣାଇଲେ । ଏହା ବଡଲାଟଙ୍କ ଦ୍ୱାରା ଅନୁମୋଦିତ ହୋଇ ୧୯୦୨, ଜୁନ୍ ୧୮ ତାରିଖରେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପାଇଁ ଏକ ସରକାରୀ ଇସ୍ତାହାର ପ୍ରକାଶ ପାଇଲା । ଏହା କାର୍ଯ୍ୟକାରୀ ହେଲା ୧୯୦୫ ଜୁଲାଇ ୧୯ ତାରିଖରେ । ଏହାପରେ ଛତିଶଗଡ଼ ଶାସନାଧିନ ଥିବା ସମ୍ବଲପୁର ସହିତ ବାମଣ୍ଡା, ରେଢ଼ାଖୋଲ, ସୋନପୁର, କଳାହାଣ୍ଡି, ବଲାଙ୍ଗିର ତଥା ଛୋଟନାଗପୁର ଡିଭିଜନ୍‌ର ଗାଙ୍ଗପୁର ଓ ବଣାଇ ଗଡଜାତ ମାନଙ୍କୁ ଆଣି ଓଡ଼ିଶା ଡିଭିଜନ୍‌ରେ ମିଶାଗଲା । ଏହି ମିଶ୍ରଣ ଫଳରେ ଓଡ଼ିଶା ବାସୀଙ୍କ ମନରେ ଆନନ୍ଦର ଲହରୀ ଖେଳିଗଲା । ଜନତାର ଭାଷା ଆନ୍ଦୋଳନ ଫଳପ୍ରସୂ ହେଲା ।



# ବାମଣ୍ଡାରେ ପାଳିତ
# ପର୍ବପର୍ବାଣି ଓ ଓଷାବ୍ରତ

ପୂର୍ବତନ ବାମଣ୍ଡା ରାଜ୍ୟ ଦୁଇଟି ସବ୍‌ଡିଭିଜନ୍‌ରେ ବିଭକ୍ତ ଥିଲା। ସେଗୁଡ଼ିକ ହେଲା ଦେବଗଡ଼ ଓ କୁଚିଣ୍ଡା। ଦେବଗଡ଼ ସବ୍‌ଡିଭିଜନ୍‌ରେ ଅଧିକାଂଶ ବାସିନ୍ଦା ଚଷା ଓ କୁଚିଣ୍ଡାର ଅଧିକାଂଶ ବାସିନ୍ଦା ଆଗରିଆ। ଏ ଉଭୟ ସବ୍‌ଡିଭିଜନ୍ ଏକ ଶାସନ ତଳେ ଥିଲେ ମଧ ଏକଠାରୁ ଅନ୍ୟର ଭାଷା, ସଂସ୍କୃତି, ଚାଲିଚଳଣ ଓ ପର୍ବପର୍ବାଣି ପାଳନ ଆଦି ସଂପୂର୍ଣ୍ଣ ଭିନ୍ନ। ଦେବଗଡ଼ ସବ୍‌ଡିଭିଜଡ଼ରେ ଅନୁଗୁଳ, ଢେଙ୍କାନାଳ ଓ ଉପକୂଳ ଅଞ୍ଚଳର ପ୍ରଭାବ ପଡ଼ିଥିବା ବେଳେ କୁଚିଣ୍ଡା ସବ୍‌ଡିଭିଜନ୍‌ରେ ସମ୍ବଲପୁର ଓ ଗାଙ୍ଗପୁର ଅଞ୍ଚଳର ପ୍ରଭାବ ପଡ଼ିଛି। ଦେବଗଡ଼ର ମୁଖ୍ୟପର୍ବ ଗୁଡିକ ହେଲା ରଥଯାତ୍ରା, ଦଶହରା, ଅଁଳା ନବମୀ, ରମ୍ଭା ଦେବୀ ପୂଜା, ଦୋଳୋତ୍ସବ, ପୌଷାଭିଷେକ ଆଦି ଏବଂ କୁଚିଣ୍ଡା ସବ୍‌ଡ଼ିଭିଜନର ମୁଖ୍ୟ ପର୍ବ ଗୁଡିକ ହେଲା ରଥଯାତ୍ରା, ନୂଆଁଖାଇ, ଦଶହରା, ପୁଷ୍‌ପୁନି ଇତ୍ୟାଦି।

## ଦେବଗଡ଼ ଅଞ୍ଚଳର ମୁଖ୍ୟ ପର୍ବ

### ରଥଯାତ୍ରା

ପୁରୁଣାଗଡ ସ୍ଥିତ ଜଗନ୍ନାଥ ମନ୍ଦିରରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଠାରୁ ଦଶମୀ ପର୍ଯ୍ୟନ୍ତ ପ୍ରତ୍ୟହ ଯାତ୍ରା ହୁଏ ଏବଂ ଯାତ୍ରାରେ ଶହ ଶହ ଦର୍ଶକଙ୍କ ସମାଗମ ହୋଇଯାଏ। ଦ୍ୱିତୀୟା ଦିନ କେବଳ ଛେରା ପହଁରା କରାଯାଇ ତିନି ମୂର୍ତ୍ତିଙ୍କୁ ରଥରେ ବସାଯାଏ। ତୃତୀୟା ଦନ ରଥ ଅଧବାଟ ଯାଏ ଟଣାଯାଏ ଏବଂ ଚତୁର୍ଥୀ ଦିନ ରଥଟଣା ହୋଇ ତିନିଠାକୁର ଗୁଣ୍ଡିଚା ମନ୍ଦିରକୁ ବିଜେ କରନ୍ତି। ଦଶମୀ ଦିନ ଠାକୁରଙ୍କ ବାହୁଡା ଯାତ୍ରା ହୁଏ। ଶ୍ରୀମନ୍ଦିରରେ ପ୍ରବେଶ ବେଳେ ଲକ୍ଷ୍ମୀ ନାରାୟଣ କଳି ବହୁ ଆଡମ୍ବରରେ ପାଳନ କରାଯାଏ। ଏହି ତ୍ରିମୂର୍ତ୍ତି ମହାଭାରତର କୃଷ୍ଣ, ବଳରାମ ଓ ସୁଭଦ୍ରା ଅଟନ୍ତି ଏବଂ ଜଗନ୍ନାଥ ଲକ୍ଷ୍ମୀଙ୍କ ସ୍ୱାମୀ। ଏହି ରଥଯାତ୍ରା ପର୍ବ ରାଜଶାସନ ସମୟରେ ପ୍ରସିଦ୍ଧି ଲାଭ କରିଥିଲା।

## ଦଶହରା

ପୂର୍ବତନ ବାମଣ୍ଡାର ରାଜଧାନୀ ଦେବଗଡ଼ରେ ଶାରଦୀୟ ଉତ୍ସବ ବହୁ ଆଡମ୍ବର ଓ ଜାକଜମକରେ ପାଳନ କରାଯାଉଥିଲା । ରାଜବାଟୀରେ ପ୍ରତିଷ୍ଠିତ "କନକ ଦୁର୍ଗା"ଙ୍କୁ ଗଡଦେବୀ ରୂପେ ପୂଜା କରାଯାଏ । ପୂର୍ବେ ଦଶହରା ପର୍ବ ସମୟରେ ଛାଗଳାଦି ବଳି ଦେବା ପ୍ରଥା ଥିଲା । ଏହି ପ୍ରଥାକୁ ସାର୍ ବାସୁଦେବ ସୁଢ଼ଳଦେବ ବନ୍ଦ କରିଦେଇଥିଲେ । ଦେବୀ ଥିଲେ ଗଡରକ୍ଷିଣୀ । ଏତଦ୍‌ବ୍ୟତୀତ ରାଜାମାନଙ୍କର ବିଶ୍ୱାସ ଥିଲା ଯେ ଯୁଦ୍ଧରେ ଜୟ ପରାଜୟ ନିର୍ଭର କରେ ଦେବୀଙ୍କ ସନ୍ତୋଷ ଅସନ୍ତୋଷ ଉପରେ । ଆଗେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ମଧ୍ୟରେ ଲଗାୟତ ଯୁଦ୍ଧ ହେଉଥିଲା । ଯୁଦ୍ଧକୁ ବାହାରିବା ସମୟରେ ରାଜା ଦେବୀଙ୍କ ଠାରୁ ଆଜ୍ଞା ମାଗୁଥିଲେ ଓ କପାଳରେ ଦେବୀଙ୍କ ସିନ୍ଦୁର ଲଗାଉଥିଲେ । ରାଜବାଟୀରେ କନକଦୁର୍ଗାଙ୍କ ପୂଜା ଅଷ୍ଟମୀ ଠାରୁ ଦଶମୀ ପର୍ଯ୍ୟନ୍ତ ମହାସମାରୋହର ପାଳିତ ହେଉଥିଲା । ଦଶହରା ବେଳେ ମାଆଙ୍କ ଷୋହଳପୂଜା ହୁଏ ଏବଂ ଅଷ୍ଟମୀରୁ ଦଶମୀ ଯାଏ ରାତିରେ ନଗର ଭ୍ରମଣରେ ବାହାରୁଥିଲେ । ଦେବଗଡ଼ ସହରର ମୁଖ୍ୟ ଚାରୋଟି ଛକରେ ବଳି ଭୋଗ ଦେବାର ବ୍ୟବସ୍ଥା ଥିଲା । ଉକ୍ତ ଦିନ ଗୁଡ଼ିକରେ ଦେବୀଙ୍କ ସମ୍ମୁଖରେ ସମର ନୃତ୍ୟ, ଖଣ୍ଡା ଖେଳ ବ୍ୟତୀତ ନାଟ, ପାଲା, ଦାସକାଠିଆ ଆଦି ଅନୁଷ୍ଠିତ ହେଉଥିଲା । ଦଶହରା ଦିନ ରାଜବାଟିରୁ ଶୂଳିଆ ପଦାକୁ ଏକ ବିରାଟ ଶୋଭାଯାତ୍ରା ବାହାରେ । ଶୋଭାଯାତ୍ରା ପାଇଁ ହାତୀମାନଙ୍କୁ ବିଭିନ୍ନ ରଙ୍ଗରେ ଚିତ୍ରଣ କରି ସେମାନଙ୍କ ପିଠିରେ 'ହାଉଦା' ପକାଯାଏ । ଶୋଭାଯାତ୍ରା ଆଗରେ ବିଭିନ୍ନ ରଙ୍ଗର ଫୁଲଗଛ ଧାଡ଼ି ଧାଡ଼ି ସଜା ହେବା ସହ ବିଭିନ୍ନ ପ୍ରକାର ବାଜା ବଜାଯାଏ ଓ ବାଣ ଫୁଟାଯାଏ । ହାତୀରେ ବସି ଆଗେ ଆଗେ ଯାଆନ୍ତି ରାଜ ପୁରୋହିତ, ରାଜଗୁରୁ, ରାଜବ୍ରହ୍ମା ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀଗଣ । ତା'ପରେ ଆସନ୍ତି ରାଜବେଶ ପରିଧାନ କରି ରାଜା ଓ ରାଜ ପରିବାରର ସଦସ୍ୟଗଣ । ଏହି ଶୋଭାଯାତ୍ରାରେ ଯୋଗ ଦେଉଥିଲେ ସହର ଓ ଗ୍ରାମାଞ୍ଚଳର ହଜାର ହଜାର ପ୍ରଜାକୁଳ । ଶୂଳିଆ ପଦାରେ ପହଞ୍ଚିବା ପରେ ଲାଖବିନ୍ଧା ପର୍ବ ହୋଇଥାଏ । ସେଥିରୁ ରାଜାଙ୍କର ଲକ୍ଷ୍ୟ ଭେଦରେ ପାରଙ୍ଗମତା ଜଣାଯାଏ । ତାପରେ ପୂର୍ବପରି ଶୋଭାଯାତ୍ରା ରାଜବାଟୀକୁ ପ୍ରତ୍ୟାବର୍ତ୍ତନ କରେ । ଏତଦ୍‌ବ୍ୟତୀତ ରାଜଧାନୀର ପ୍ରତ୍ୟେକ ପରିବାରରେ ଦଶହରା ପର୍ବ ପାଳିତ ହୁଏ । ଏପରିକି ପରିବାରର

ଲୋକେ ନୂତନ ବସ୍ତ୍ର ମଧ୍ୟ ପରିଧାନ କରନ୍ତି । ଗୃହର କୌଣସି କାର୍ଯ୍ୟର ଶୁଭାରମ୍ଭ ଏହି ଦିନ ହୋଇଥାଏ, କାରଣ ଏହିଦିନକୁ ସର୍ବଶୁଭ ବୋଲି ବିଚାର କରାଯାଏ ।

### ଅଁଳା ନବମୀ

କାର୍ତ୍ତିକ ଶୁକ୍ଳପକ୍ଷ ନବମୀ ଦିନ ଏହି ପର୍ବ ପାଳିତ ହୋଇଥାଏ । ଏହି ପର୍ବ ପାଳନରେ ଦେବଗଡ଼ର ସ୍ୱତନ୍ତ୍ରତା ଦେଖାଯାଏ । ଅଁଳା ନବମୀ ଦିନ ପ୍ରତ୍ୟେକ ଘରେ ତୁଳସୀ ଚଉଁରାରେ ବୃନ୍ଦାବତୀଙ୍କ ପୂଜା କରାଯାଏ । ସହରବାସୀ ଏହିଦିନ ଦେବଗଡ଼ ନିକଟସ୍ଥ ଝାଡେଶ୍ୱର ମନ୍ଦିରକୁ ଯାଇ ଦିଅଁ (ଶିବଙ୍କ) ଦର୍ଶନ କରିବା ସହ ମନ୍ଦିର ନିକଟସ୍ଥ ପୋଖରୀ କୂଳରେ ଅରୁଆନ୍ନ ପ୍ରସ୍ତୁତ କରି ପରିବାରର ସମସ୍ତ ସଭ୍ୟ ଏକତ୍ର ବସି ଭୋଜନ କରନ୍ତି ଏବଂ ଖୁସିମନରେ ସନ୍ଧ୍ୟାରେ ଘରକୁ ଫେରନ୍ତି ।

### ରମ୍ଭା ଦେବୀ ପୂଜା

ଦେବଗଡ଼ ସବ୍‌ଡିଭିଜନସ୍ଥ ବାରକୋଟର ରମ୍ଭାଦେବୀଙ୍କ ପୂଜା ପାଇଁ ପ୍ରସିଦ୍ଧ । ପଞ୍ଚଦଶ ଶତାବ୍ଦୀ ବେଳକୁ ବାରକୋଟ ଏକ ସ୍ୱତନ୍ତ୍ର କ୍ଷୁଦ୍ର ରାଜ୍ୟ ଥିଲା । ସେଠାରେ 'ଜିତ୍' ବଂଶର ରାଜାମାନେ ରାଜତ୍ୱ କରୁଥିଲେ । ବାମଣ୍ଡାର ଷଷ୍ଠ ରାଜା ରୁଦ୍ରନାରାୟଣ ଦେବଙ୍କ ରାଜତ୍ୱ କାଳରେ ବାରକୋଟ ରାଜା ନିହତ ହେବାରୁ ଏହି ଅଞ୍ଚଳକୁ ସେ ଦଖଲ କରି ବାମଣ୍ଡା ରାଜ୍ୟରେ ମିଶ୍ରଣ କଲେ । ରମ୍ଭାଦେବୀ 'ଜିତ୍' ବଂଶ ରାଜାଙ୍କ ଇଷ୍ଟ ଦେବୀ ଥିବାରୁ ଏଠାରେ ପ୍ରତିବର୍ଷ କୁମାର ପୂର୍ଣ୍ଣିମା ଦିନ ରମ୍ଭାଦେବୀଙ୍କ ପୂଜା ଓ ଯାନିଯାତ୍ରା ସମାରୋହରେ ଅନୁଷ୍ଠିତ ହୁଏ । ପରବର୍ତ୍ତୀ କାଳରେ ବାମଣ୍ଡା ରାଜା ବାରକୋଟ ଯାଇ ରମ୍ଭା ଦେବୀଙ୍କ ଦର୍ଶନ ପୂର୍ବକ ଉତ୍ସବରେ ଯୋଗଦାନ କରୁଥିଲେ ।

### ଦୋଳୋତ୍ସବ

ରାଜଶାସନ ବେଳେ ରାଜବାଟୀରେ ଏକାଦଶୀ ଠାରୁ ପୂର୍ଣ୍ଣିମା ଯାଏ ଏହି ପର୍ବ ପାଳିତ ହେଉଥିଲା । ରାଧା ଓ କୃଷ୍ଣଙ୍କୁ ପୂଜାର୍ଚ୍ଚନା ପରେ ଦୋଳିରେ ବସାଇ ସ୍ତ୍ରୀ ଲୋକେ ଦୋଳିକୁ ଝୁଲାନ୍ତି । ସେତେବେଳେ ସେମାନେ ଗୀତ ଗାଉଥିଲେ -

*"କୃଷ୍ଣଙ୍କୁ ଝୁଲାଇ ଦୋଳି*
*ଚତୁର୍ଦ୍ଧା ମୂରତି ଦେଖିବି ବୋଲି ଗୋ*
*ବଡ଼ ଆଶା କରିଥିଲି ।"*

ଦୋଳ ପୂର୍ଣ୍ଣିମା ଦିନ ରାଧାକୃଷ୍ଣଙ୍କୁ ଅବିର ଲଗାଇବା ପରେ ସମସ୍ତେ ପରସ୍ପରକୁ ଅବିର ଲଗାନ୍ତି । ଏହା ପରଦିନ ହୁଏ ରଙ୍ଗୋତ୍ସବ । ରାଜବାଟୀର ଗୋଟିଏ କୁଣ୍ଡରେ ରଙ୍ଗ ଗୋଳାଯାଏ ଏବଂ ରଙ୍ଗୋତ୍ସବ ପାଳିତ ହୁଏ । ସେଠାକୁ ରାଜପରିବାର ଓ ଉଚ୍ଚପଦସ୍ଥ କର୍ମଚାରୀ ଗଣ ରଙ୍ଗ ଖେଳିବାକୁ ଯାଆନ୍ତି । ସେମାନଙ୍କୁ ନେଇ ରଙ୍ଗ କୁଣ୍ଡରେ ବୁଡାଇ ଦିଆଯାଏ ଏବଂ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସାବୁନ, ବାସନା ତେଲ ଶିଶି ଓ କିଛି ମିଠା ଦିଆଯାଏ । ଏହିପରି ଭାବରେ ଫାଲଗୁନ ମାସରେ ଶେଷ ପାଞ୍ଚଦିନ ବହୁ ଆନନ୍ଦରେ ଅତିବାହିତ ହୋଇଥାଏ ।

**ପୌଷାଭିଷେକ**

ପ୍ରତ୍ୟେକ ବର୍ଷ ପୌଷ ପୂର୍ଣ୍ଣିମା ଦିନ ରାଜାଙ୍କ ଅଭିଷେକ ହୁଏ । ରାଜା ସେଦିନ ନୂତନ ବସ୍ତ୍ର ଓ ଉପବୀତ ଧାରଣ କରି ରାଜସିଂହାସନରେ ବସନ୍ତି । ଗୁରୁ, ବ୍ରହ୍ମା, ବରିଷ୍ଠ ରାଜ କର୍ମଚାରୀ ଆଦିଙ୍କ ଗହଣରେ ରାଜଶାସନ ନେଇ ବହୁ ତାତ୍ତ୍ୱିକ ବିଷୟ ଆଲୋଚିତ ହୁଏ ଏବଂ ଉପସ୍ଥିତ ଲୋକମାନଙ୍କୁ ଭୂରି ଭୋଜନରେ ଆପ୍ୟାୟିତ କରାଯାଏ ।

ରାମନବମୀ

ଚୈତ୍ରମାସରେ ପାଳିତ 'ରାମଲୀଳା' ଏ ଅଞ୍ଚଳର ଏକ ବିଶିଷ୍ଟ ପର୍ବ ଅଟେ । ରାମନବମୀ ଠାରୁ ପୂର୍ଣ୍ଣିମା ଯାଏ ସାତ ଦିନ ଧରି ସାତ କାଣ୍ଡ ରାମାୟଣର ବିଷୟବସ୍ତୁକୁ ନାଟକ ଆକାରରେ ପ୍ରଦର୍ଶନ କରାଯାଇଥାଏ । ଦେବଗଡ ସହରର ଧୋବା ଓ ଭୂୟାଁ ସାହି ବାସିନ୍ଦା ଏଥିରେ ପ୍ରମୁଖ ଅଂଶ ଗ୍ରହଣ କରିଥାଆନ୍ତି । ରାମଲୀଳା ବାଲ୍ମୀକି ଋଷିଙ୍କ ରଚିତ ରାମାୟଣର ରାମଚନ୍ଦ୍ରଙ୍କ ଜୀବନ ଚରିତ ଉପରେ ଏହାର ବିଷୟବସ୍ତୁ ଆଧାରିତ । ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କୁ ହିନ୍ଦୁ ସମାଜର ଆଦର୍ଶ ରୂପେ ଗ୍ରହଣ କରାଯାଇଥାଏ । ଏଣୁ ରାମାୟଣର ବିଷୟବସ୍ତୁ ପରିବାରକୁ ଆଦର୍ଶ ଓ ସୁଶୃଙ୍ଖଳ ଭାବେ ଗଢ଼ିବା ପାଇଁ ସହାୟକ ହୋଇଥାଏ । ଏବେ ବି ସମାଜରେ ଭାତୃଭକ୍ତ ଭାଇମାନଙ୍କୁ 'ଲକ୍ଷ୍ମଣ' ଓ ସ୍ୱାମୀଭକ୍ତ ସ୍ତ୍ରୀ ମାନଙ୍କୁ 'ସୀତା' ନାମରେ ନାମିତ କରାଯାଇଥାଏ । ରାଜନୀତି କ୍ଷେତ୍ରରେ ମଧ୍ୟ ରାମଙ୍କୁ ଜଣେ ଆଦର୍ଶ ରାଜା ରୂପେ ବିଚାର କରି ତାଙ୍କର ଗୁଣାବଳୀକୁ ଅନୁସରଣ କରିବାପାଇଁ ଉପଦେଶ ଦିଆଯାଏ ।

# ମା' ତାରିଣୀଙ୍କ ପୀଠ ଯାତ୍ରା

ଦେବଗଡ଼ ସବ୍‌ଡିଭିଜନସ୍ଥ ରିଆମାଳ ଅଞ୍ଚଳର କାଉଁଶିପାଳ ଗ୍ରାମ ନିକଟସ୍ଥ ମା' ପୀଠ ତାରିଣୀଙ୍କ ମନ୍ଦିର ଅଛି। ପ୍ରତିବର୍ଷ ଚୈତ୍ର ପୂର୍ଣ୍ଣିମା ଦିନ ଏହି ପୀଠରେ ଯାତ୍ରା ଅନୁଷ୍ଠିତ ହୁଏ। ଯାତ୍ରାରେ ବହୁଜନଙ୍କ ସମାଗମ ହେତୁ ଏହି ନିର୍ଜନବନାନୀ ମୁଖରିତ ହୋଇଉଠେ। ଓଡ଼ିଶୀ କୀର୍ତ୍ତନ ଓ ନଦିଆଁ କୀର୍ତ୍ତନରେ ମା'ଙ୍କ ପୀଠସ୍ଥଳୀ କୋଳାହଳମୟ ହୁଏ। ଯାତ୍ରାର ପୂର୍ବଦିନ ମା'ଙ୍କର ପ୍ରସିଦ୍ଧ କଳସଯାତ୍ରା ପର୍ବ ପାଳିତ ହୋଇଥାଏ। ନିକଟସ୍ଥ ଗ୍ରାମ ମାନଙ୍କର ଶହ ଶହ ଝିଅ ବୋହୂ ସକାଳୁ ଶୁଦ୍ଧସ୍ନାନ କରି ନୂତନ ବସ୍ତ୍ର ପରିଧାନ ପୂର୍ବକ ନୂତନ ମାଟି କଳସ ଓ ନଡ଼ିଆ ଧରି ଶୋଭାଯାତ୍ରାରେ ବାହାରନ୍ତି। ତିନି କିଲୋମିଟର ଦୂର ଟିକିରା ନଦୀରୁ ଜଳ ନେଇ ସେମାନେ କଳସ ଯାତ୍ରା କରନ୍ତି ଏବଂ ସେହି ଜଳପୂର୍ଣ୍ଣ କଳସକୁ ଆଣି ମା ତାରିଣୀଙ୍କ ପୀଠରେ ସ୍ଥାପନା କରନ୍ତି। ଏହାପରେ ଅରୁଆନ୍ନର ଭୋଗ ପାଇ ସେମାନେ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କରନ୍ତି। ଯାତ୍ରାଦିନ ସକାଳୁ ମା'ଙ୍କ ପୀଠରେ ହୋମଯଜ୍ଞ ହୁଏ। ମଧ୍ୟାହ୍ନ ତଥା ରାତ୍ରୀରେ ବହୁ ଜନ ସମାଗମ ହୋଇଥାଏ। ଯାତ୍ରା ପରଦିନ ଭକ୍ତଗଣ ନିକଟସ୍ଥ ଭାଇ-ଭଉଣୀ ପ୍ରପାତରେ ସ୍ନାନ କରି ମା'ଙ୍କ ଅନ୍ନଭୋଗ ପାଇ ନିଜ ଗୃହକୁ ଫେରିଥାନ୍ତି।

ଏହି ମା' ତାରିଣୀଙ୍କ ପୀଠ ସମ୍ବନ୍ଧରେ ବହୁ କିମ୍ବଦନ୍ତୀ ଅଛି। ତନ୍ମଧ୍ୟରୁ ଗୋଟିଏ କିମ୍ବଦନ୍ତୀ ଉଲ୍ଲେଖନୀୟ। ନିକଟସ୍ଥ ଭାଇଭଉଣୀ ପର୍ବତର ପୂର୍ବପାଖରେ ହିଞ୍ଜୁଳା ନଦୀରେ ଏହି ଭାଇଭଉଣୀ ପ୍ରପାତର ସୃଷ୍ଟି ହୋଇଛି। ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ ମାହାଭାରତ ଯୁଦ୍ଧ ପରେ ପୁତ୍ର ପରୀକ୍ଷିତଙ୍କୁ ରାଜ୍ୟଭାର ଅର୍ପଣ କରି ଦେବୀ ଦ୍ରୌପଦୀ ଓ ଭ୍ରାତାମାନଙ୍କ ସହ ଯୁଧିଷ୍ଠିର ତୀର୍ଥାଟନରେ ବାହାରିଲେ। ସେମାନେ ହସ୍ତିନାପୁରର ପୂର୍ବାଭିମୁଖରେ ଯାଇ ବିଭିନ୍ନ ସ୍ଥାନ ପରିଦର୍ଶନ ପୂର୍ବକ ସମୁଦ୍ରକୂଳରେ ଅଗ୍ନିଦେବଙ୍କ ସହ ସାକ୍ଷାତ କଲେ ଏବଂ ଅଗ୍ନିଦେବଙ୍କ ନିର୍ଦ୍ଦେଶରେ ଉତ୍କଳର ବିଭିନ୍ନ ତୀର୍ଥସ୍ଥାନ ପରିଭ୍ରମଣ କଲେ। ପ୍ରାଚୀନ କୋଶଳାଞ୍ଚଳ ଭ୍ରମଣ ସମୟରେ ସେମାନେ ହିଞ୍ଜୁଳୀ ନଦୀ ପ୍ରବାହିତ ପର୍ବତର ନିମ୍ନଦେଶରେ ପହଞ୍ଚିଲେ। ପାଣ୍ଡବଗଣ ତୃଷାର୍ତ୍ତ ଅନୁଭବ କରିବାରୁ ଜଳର ସନ୍ଧାନରେ ବାହାରିଲେ। ଭଗବାନ ବିଷ୍ଣୁ ତୃଷାର୍ତ୍ତ ଧର୍ମରାଜ ଯୁଧିଷ୍ଠିରଙ୍କ ବିକଳାବସ୍ଥା ସହ୍ୟ କରିନପାରି ଗ୍ରୀଷ୍ମଋତୁରେ ଝରଣାରେ ଦୁଇଟି ଗର୍ତ୍ତ ସୃଷ୍ଟି କଲେ।

ଏଇ ଦୁଇ ଗଣ୍ଡର ନାମକୁ ଭାଇ-ଭଉଣୀ ଗଣ୍ଡ କୁହାଯାଏ। ତୃଷାତୁର ପାଣ୍ଡବଗଣ ଓ ଦେବୀ ଦ୍ରୌପଦୀ ସେମାନଙ୍କର ତୃଷା ନିବାରଣ ପୂର୍ବକ ଅନ୍ୟତ୍ର ଯାତ୍ରା କଲେ।

## ରୁକ୍ମିଣୀ ବିବାହ

ଦେବଗଡ଼ରେ ଏହି ଯାତ୍ରା ପ୍ରତିବର୍ଷ ଜ୍ୟେଷ୍ଠ ଶୁକ୍ଳପକ୍ଷ ଏକାଦଶୀ ଓ ଦ୍ୱାଦଶୀ ଦୁଇଦିନ ଧରି ମହାସମାରୋହରେ ପାଳିତ ହୁଏ। ଏଥିରେ ରାଜା ଓ ରାଜବଂଶୀୟଙ୍କ ସହିତ ବାହ୍ୟ ଆଗତ ଅତିଥି ଓ ବାମଣ୍ଡାର ପ୍ରଜାଗଣ ଯୋଗ ଦିଅନ୍ତି। ରାତ୍ରିରେ ଯାତ୍ରା, ନାଟକ ପ୍ରଭୃତି ଅନୁଷ୍ଠିତ ହୁଏ। ରାଜ୍ୟ ମିଶ୍ରର ପରେ ଏ ଯାତ୍ରା ପ୍ରାୟତଃ ବନ୍ଦ ହୋଇଥିବା ଜଣାଯାଏ।

## ଦଣ୍ଡନାଟ

ଦେବଗଡ଼ ଅଞ୍ଚଳରେ ଅନ୍ୟାନ୍ୟ ଲୋକନାଟକ ଅପେକ୍ଷା 'ଦଣ୍ଡନାଟ' ଅଧିକ ଲୋକପ୍ରିୟ ଅଟେ। ଏହି ଅଞ୍ଚଳରେ କେବେଠାରୁ ଦଣ୍ଡନାଟ ଅନୁଷ୍ଠିତ ହେଲା ତାର ପ୍ରମାଣ ଜଣାଯାଏ ନାହିଁ। ଐତିହାସିକ ମାନଙ୍କ ମତରେ ବୌଦ୍ଧଧର୍ମକୁ ପରାହତ କରିବା ପାଇଁ ଶୈବଧର୍ମର ବ୍ୟାପକ ପ୍ରଚାର ଓ ପ୍ରସାର ହେଲା। ଜନସାଧାରଣଙ୍କ ମଧ୍ୟରେ ଧାରଣା ସୃଷ୍ଟି କରାଗଲା ଯେ ଶିବ ଆରାଧନା ହେଉଛି ଏକମାତ୍ର ମୁକ୍ତିର ପଥ। ଏହି ଦଣ୍ଡନାଟ ଶିବ ଆରାଧନା ଉପରେ ଆଧାରିତ। ଶିବଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦଣ୍ଡନାଟରେ ଅଂଶଗ୍ରହଣ କରୁଥିବା ବ୍ୟକ୍ତି ମାନେ ଭୋଗୁଥିବା କଷ୍ଟ ବା ଯନ୍ତ୍ରଣା ଯୋଗୁଁ ନାଟକର ନାମକରଣ କରାଯାଇଛି ଦଣ୍ଡନାଟ।

ଏ ନାଟକ ଲୋକଧର୍ମ ଉପରେ ପ୍ରତିଷ୍ଠିତ। ଦେବଗଡ଼ ଅଞ୍ଚଳରେ ପ୍ରଚଳିତ ଦଣ୍ଡନାଟ ଉପରେ ଜନଶ୍ରୁତି ରହିଛି ଯେ ଅଷ୍ଟବକ୍ର ଋଷିଙ୍କୁ ପରିହାସ କରିବାରୁ ୧୩ ଜଣ ଋଷିପୁତ୍ର ଅନ୍ଧ ହେଲେ। ଏମାନଙ୍କର ଦୁଃଖ କଷ୍ଟରେ ଅଷ୍ଟବକ୍ର ଋଷି ବିବ୍ରତ ହୋଇ ସେମାନଙ୍କୁ ୧୩ ଦିନ କାଳ କଠୋର ଶିବ ଉପାସନା କରିବାକୁ ଉପଦେଶ ଦେଲେ। ଏହି ଦଣ୍ଡନାଟରେ ଅଭିନୟ କରୁଥିବା ୧୩ ଜଣ ଯାକ ଜଣେ ଜଣେ ଋଷିପୁତ୍ରଙ୍କ ଭୂମିକା ଗ୍ରହଣ କରିଥାନ୍ତି। ଏ ୧୩ ଜଣଙ୍କ ମଧ୍ୟରେ ଥାନ୍ତି ପୂଜକ ଓ ରୁଦ୍ରଗଣଙ୍କ ପ୍ରତୀକ। ନାଟକ ବେଳେ ବିଭିନ୍ନ ଚରିତ୍ର ଯଥା ଯୋଗୀ-ଯୋଗୀଆଣି, ଶବର- ଶବରୁଣୀ, ବାଇଧନ, ଚଢ଼େୟା-ଚଢ଼େୟାଣୀ, ବୀଣାକାର ଆଦି ପାର୍ଶ୍ୱ ଅଭିନୟ

ଏମାନେ ପ୍ରଦର୍ଶନ କରିଥାନ୍ତି ଦର୍ଶକଙ୍କ ମନୋରଞ୍ଜନ ପାଇଁ। ଦଣ୍ଡନାଟ ଦଳରେ ମଧ୍ୟ ଅନ୍ୟବ୍ୟକ୍ତିମାନେ ସାମିଲ ହୋଇଥାନ୍ତି। ମାନସିକ କରିଥିବା ବ୍ୟକ୍ତି ଏଥିରେ ଯୋଗଦାନ କରୁଥିବା ଦେଖାଯାଏ। କାରଣ ଦଣ୍ଡନାଟରେ ମିଶିବା ପାଇଁ କୌଣସି ପ୍ରକାର କଟକଣା ନଥାଏ। ଏପରିକି ଜାତି, ଧର୍ମ, ଗୋତ୍ରର ମଧ୍ୟ କୌଣସି ବାରଣ ନାହିଁ। ଶୁଦ୍ରମାନଙ୍କ ସହ ଉଚ୍ଚବଂଶର ଜାତି ମାନେ ମଧ୍ୟ ଏକତ୍ର ମିଶି ନୃତ୍ୟ କରନ୍ତି। ଏଣୁ ଦଣ୍ଡନାଟରେ ସାମ୍ୟଭାବ ପ୍ରକାଶ ପାଇଥାଏ। ଏ ନାଟରେ ସ୍ତ୍ରୀ ମାନଙ୍କୁ ଅଂଶଗ୍ରହଣ ପାଇଁ ନିଷେଧ ଅଛି କାରଣ ନାଟକ ପ୍ରଦର୍ଶନରେ ଶାରୀରିକ ପରିଶ୍ରମ ଅଧିକ ପଡିଥାଏ।

ସାଧାରଣତଃ ଦେଖାଯାଏ ଯେ ଦେବଗଡ ଅଞ୍ଚଳରେ ପଣାସଂକ୍ରାନ୍ତିର ୧୩ ଦିନ ପୂର୍ବରୁ ୧୩ ଦିନ ଧରି ଦଣ୍ଡନାଟ ପ୍ରଦର୍ଶିତ ହୁଏ। କାରଣ ଲୋକଙ୍କ ବିଶ୍ୱାସ ଯେ ଚୈତ୍ରମାସରେ ଶିବ ଉପାସନା କଲେ ଉତ୍ତମ ଫଳ ମିଳିଥାଏ। ଦଣ୍ଡୁଆମାନେ ୧୩ ଦିନ ଧରି କଠୋର ସଂଯମତା ଅବଲମ୍ବନ କରିଥାଆନ୍ତି। ସେମାନେ ଆହାର, ନିଦ୍ରା, ପ୍ରଭୃତି ପାର୍ଥିବ ଭୋଗବିଳାସରୁ ଦୂରେଇ ରହନ୍ତି। ସେମାନେ ଖାଲି ପାଦରେ ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ଚାଲି ଚାଲି ଯାଆନ୍ତି। ଦଣ୍ଡନାଟର ଏହି କଠୋର ବ୍ରତ ପାଳନ କରିବା ଉଦ୍ଦେଶ୍ୟ ହେଲା ନିଜର ମୁକ୍ତି ଓ ଯଜମାନର ମନସ୍କାମନା ପୂର୍ଣ୍ଣ କରିବା।

ପ୍ରଥମ ଦିନ ଦଣ୍ଡୁଆ ମାନେ ଦଣ୍ଡନାଟର ସମସ୍ତ ଉପକରଣ ନେଇ ନିଜ ଗ୍ରାମରେ ଦଣ୍ଡ ନାଟ କରିଥାନ୍ତି ଏବଂ ପରଦିନ ସକାଳେ ସେମାନେ ଦଣ୍ଡ ଧରି ବାଜା ବଜାଇ ବଜାଇ ନିଜ ଗ୍ରାମ ପରିତ୍ୟାଗ କରିଥାନ୍ତି। ସେମାନେ ନିଜ ଗ୍ରାମକୁ ପରିତ୍ୟାଗ କରିବା ପୂର୍ବରୁ ଇଷ୍ଟଦେବଦେବୀ, ପିତାମାତା ଓ ଗୁରୁଜନଙ୍କୁ ପ୍ରଣାମ କରି ଗାଁ ଦାଣ୍ଡରେ ତିନୋଟି ଗାର କାଟି ସୂର୍ଯ୍ୟଦେବଙ୍କୁ ପ୍ରଣାମ କରି ପୂର୍ବାଭିମୁଖୀ ହୋଇ ବାହାରନ୍ତି। ଦଣ୍ଡୁଆମାନେ ବାଜା ବଜାଇ ବଜାଇ ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ଗଲାବେଳେ ଯେଉଁ ଗ୍ରାମର ବ୍ୟକ୍ତି ବିଶେଷ ଦଣ୍ଡନାଟ ପାଇଁ କାମନା କରିଥାନ୍ତି ତାଙ୍କ ଘର ସମ୍ମୁଖରେ ଗୋବର ଲିପନ୍ତି ବା ପାଣି ଢ଼ାଳନ୍ତି। ସେଥିରୁ ଦଣ୍ଡୁଆମାନେ ଜାଣନ୍ତି ଯେ ଗୃହସ୍ଥର ଦଣ୍ଡନାଟର ମନସ୍କାମନା ଅଛି। ତାଙ୍କ ଘର ସାମ୍ନାରେ ଦଣ୍ଡୁଆ ମାନେ ନୃତ୍ୟ କରନ୍ତି। ଗୃହସ୍ତ ଯାହା ସବୁ ପୂଜା ସାମଗ୍ରୀ ଦିଏ ତାକୁ ଦଣ୍ଡର ସମ୍ମୁଖରେ ଭୋଗ ଲଗାଇବା ପରେ ବୀଣାକାର ଶିବ ଓ କାଳୀଙ୍କ ସ୍ତୁତି ଗାନ କରେ। ଦଣ୍ଡୁଆ ମାନେ ଗାଁ ବାହାରେ ନିଛାଟିଆ ସ୍ଥାନରେ ଅବସ୍ଥାନ କରନ୍ତି।

ଦଣ୍ଡନାଟ ବିଭିନ୍ନ ପର୍ଯ୍ୟାୟ ଦେଇ ଯିବା ପରେ ଅଗ୍ନି ଦଣ୍ଡ ନୃତ୍ୟ ଆରମ୍ଭ ହୁଏ। ଗାଁ ଦାଣ୍ଡରେ ମୁକ୍ତ ଆକାଶ ତଳେ ପେଟ୍ରୋମେକ୍ସ ବା ଇଲେକ୍ଟ୍ରିକ୍ ଲାଇଟ୍ ଜାଳି ଅଭିନୟ କରାଯାଇଥାଏ। ଯଦିଓ ଦଣ୍ଡନାଟରେ ମୁଖ୍ୟ ପ୍ରସଙ୍ଗ ଶିବମହିମା ତଥାପି ନାଟକ ମଧ୍ୟରେ ବିଭିନ୍ନ ବିଷୟବସ୍ତୁ ପ୍ରଦର୍ଶନ କରାଯାଇଥାଏ। ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରଦର୍ଶିତ ଦଣ୍ଡନାଟ ମାନଙ୍କର ପ୍ରାୟ ଚରିତ୍ର ସମାନ। ସମସ୍ତ ଦଣ୍ଡୁଆ ବିଭିନ୍ନ ଚରିତ୍ର ପ୍ରଦର୍ଶନ କଲାବେଳେ ଢ଼ୋଲବାଦ୍ୟର ତାଳେ ତାଳେ ନୃତ୍ୟ କରନ୍ତି ଏବଂ ନିଜର ପରିଚୟ ପ୍ରଦାନ ଗୀତ ମାଧ୍ୟମରେ କରିଥାନ୍ତି। ଦେବଗଡ ଅଞ୍ଚଳରେ ପ୍ରଥମରେ ମଞ୍ଚ ଉପରକୁ ଜଣେ 'ହାଡି' ଆସେ। ଦଣ୍ଡନାଟରେ ଶେଷ ଚରିତ୍ର ବୀଣାକାର ପ୍ରଦର୍ଶନ କରେ। ଏ ଅଞ୍ଚଳରେ ବୀଣାକାର ହେଉଛନ୍ତି 'କାମଦେବ' ଓ ତାଙ୍କ ସ୍ତ୍ରୀ 'ରତି ଦେବୀ'। ନାଟକ ଶେଷରେ ଦଣ୍ଡୁଆମାନେ ଗୀତ ମାଧ୍ୟମରେ ଗ୍ରାମବାସୀଙ୍କ ଠାରୁ ବିଦାୟ ମାଗି ଥାଆନ୍ତି। ଏହାପରେ ପୂର୍ବବରାଦ ଅନୁଯାୟୀ ପାରିଶ୍ରମିକ ଗ୍ରହଣ କରି ଅନ୍ୟଗ୍ରାମକୁ ଯାଇଥାଆନ୍ତି। ଏହିପରି ୧୩ ଦିନ କାଳ ଦଣ୍ଡଯାତ୍ରା କଲା ପରେ ନିଜଗ୍ରାମକୁ ଦଣ୍ଡୁଆ ମାନେ ଫେରନ୍ତି ଓ ଗ୍ରାମରେ ଦଣ୍ଡନୃତ୍ୟ କରନ୍ତି। ପଣା ସଂକ୍ରାନ୍ତି ପରବର୍ତ୍ତୀ ଦିନ 'ମେରୁ' ପାଳନ କରାଯାଏ। ଏହିଦିନ ଦଣ୍ଡକୁ ପୂଜା କରିଥାଆନ୍ତି। ଏହି ମେରୁଦିନ ସେମାନେ ଜାତି ବା ଶୁଦ୍ଧ ହୁଅନ୍ତି। ଶୁଦ୍ଧକ୍ରିୟା ପରେ ରାତିରେ ଆମିଷ ଭୋଜନ କରି ନିଜ ନିଜର ଘରକୁ ଫେରନ୍ତି। ବର୍ତ୍ତମାନ ଯୁଗରେ ଟି.ଭି ଓ ସିନେମା ସତ୍ତ୍ୱେ ଏ ନାଟକ ଜନସମାଜରେ ଆଦୃତ ହେଉଛି।

## ବାମଣ୍ଡାରେ ପାଳିତ ଓଷା ବ୍ରତ

### ଭାଲୁକାଣୀ ଓଷା

ଭାଲୁକାଣୀ ଓଷା କୁମାରୀ ଝିଅମାନେ ପାଳନ କରିବା ଦେଖାଯାଏ। ଭାଦ୍ରବମାସ ପ୍ରତି ରବିବାର ଦିନ ଏହି ଓଷା ପାଳିତ ହୁଏ। ବିଶେଷତଃ, ନିମ୍ନ ବର୍ଗର କୁମାରୀମାନେ ଏହି ଓଷା ପାଳନ କରନ୍ତି। ସୁନ୍ଦର ବର, ଉତ୍ତମ ଶାଶୁ ଓ ନଣନ୍ଦ ପାଇବା ପାଇଁ ସେମାନେ ଏହି ବ୍ରତ ପାଳନ କରିଥାନ୍ତି। କୁମାରୀ ମାନେ ପାହାନ୍ତି ପ୍ରହରରୁ ଉଠି ଦଳ ଦଳ ହୋଇ ଫୁଲ ତୋଳିବାକୁ ଯାଆନ୍ତି। ପ୍ରତ୍ୟେକ ସାହିର ଝିଅ ଏକାଠି ବସି ତୋଳିଥିବା ଫୁଲର ମାଳ ଗୁନ୍ଥନ୍ତି। ମୃଣ୍ମୟୀ ଦଶଭୂଜା ମୂର୍ତ୍ତିଙ୍କୁ ଫୁଲରେ ମଣ୍ଡନ କରି

ପୂଜା କରାଯାଏ । ଶେଷ ପାଳି ଦିନ ପୂଜାର୍ଚ୍ଚନା ପରେ ମୂର୍ତ୍ତିକୁ ନିକଟସ୍ଥ ପୋଖରୀ ବା ନଈରେ ବିସର୍ଜନ କରାଯାଏ । ଏହି ବିସର୍ଜନ ଦୃଶ୍ୟ ଅତ୍ୟନ୍ତ ମର୍ମସ୍ପର୍ଶୀ । ଆଣ୍ଠୁଏ ଓ ଛାତିଏ ପାଣିରେ ପଶିଗଲା ବେଳେ ସେମାନେ ଗାଆନ୍ତି -

*"ଆଣ୍ଠୁଏ ପାଣିରେ ଦେଲି ଭସାଇଲୋ*
*ମୋ ଭାଲୁକୁଣୀ ।*
*ଛାତିଏ ପାଣିରେ ଦେଲି ଭସାଇଲୋ*
*ମୋ କଞ୍ଚନ ଦେଇ ।"*

ବିସର୍ଜନ ପରେ ମନଦୁଃଖରେ ଘରକୁ ଫେରିଥାନ୍ତି ।

**ଜହ୍ନିଓଷା**

ଜହ୍ନି ଓଷା ପାଳନର ବିଧିବିଧାନ ହେଲା ସକାଳୁ ଉଠି ସ୍ନାନ କରିବ ଏବଂ ଚଉରା ଚାରିପାଖ ଗୋବରରେ ଲିପି ପରିଷ୍କାର କରିବ । ଚଉରା ଚାରିପାଖ ପଞ୍ଚବର୍ଣ୍ଣ ମୁରୁଜରେ ଝୋଟି ଦେବ । କଉଡି, ଗୁଆ, ନଡିଆ ଆଣି ଚଉରା ମୂଳେ ଥୋଇବ । ଗୁଡିଏ ଜହ୍ନିଫୁଲ ତୋଳି ବୃନ୍ଦାବତୀଙ୍କୁ ମଣ୍ଡନ କରିବ । ପୂର୍ଣ୍ଣକୁମ୍ଭ ସ୍ଥାପନ ପୂର୍ବକ ବୃନ୍ଦାବତୀଙ୍କୁ ପୂଜା କରିବ । ଏହି ପୂଜା କଲେ ରୋଗବ୍ୟାଧିରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ମନସ୍କାମନା ପୂର୍ଣ୍ଣ ହୁଏ ।

**ଧୂନ୍‌କେଲ ବା ଧନୁକୁଇଲା ଓଷା**

ଧୂନକେଲ ଓଷା ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀ ଠାରୁ ପୂର୍ଣ୍ଣିମା ଯାଏ ପାଳିତ ହୁଏ । ଏହି ଓଷା ପାଳନ ପାଇଁ ସାହି ମାନଙ୍କରେ ଉଷାକୋଠି କରାଯାଏ । କୋଠିର କାନ୍ଥରେ ଶିବ ପାର୍ବତୀଙ୍କ ଛବି ଅଙ୍କାଯାଏ । ଏ ଏକ ଦେବୀ ପୂଜା । ଏହି ଓଷାରେ ଜଗତ୍‌ଜନନୀ ପାର୍ବତୀଙ୍କ ପୂଜା ହୁଏ । କୁମାରୀ ଝିଅମାନେ ସେମାନଙ୍କ ମନଲାଖି ବର ଓ ସନ୍ତାନ ପାଇବା ପାଇଁ ମନସ୍କାମନା କରି ଏହି ବ୍ରତ ପାଳନ କରିଥାନ୍ତି । ଝିଅମାନେ ସ୍ନାନ କରି ନିଷ୍ଠାପର ଭାବେ ଉଷାକୋଠିକୁ ଯାଆନ୍ତି । କୋଠି ମଧ୍ୟରେ କେବଳ ଜଣେ ମାତ୍ର ପୁରୁଷ ବାଜା ବଜାଇବା ପାଇଁ ଥାଏ । ଝିଅମାନଙ୍କ ମଧ୍ୟରୁ ଜଣକ ପରେ ଜଣେ ବରୁଆ ଭାବରେ ଧାନରେ ବସନ୍ତି । ବାଦ୍ୟକାର ଧୂନକେଲ ବାଦ୍ୟ ବଜାଇବା ସହ ଶିବପାର୍ବତୀଙ୍କ ସ୍ତୁତି କରେ । ଏହି ବାଦ୍ୟ ଧନୁ ଓ କୁଲେଇରେ ନିର୍ମିତ ହୋଇଥାଏ ।

ଏହି ବାଦ୍ୟ ବଜାଇବା ମାତ୍ରେ ବରୁଆ ଧ୍ୟାନମଗ୍ନ ହେବା ସହ ତା ଭିତରେ ଦୈବୀ ଶକ୍ତିର ସଞ୍ଚାର ହୁଏ। ଏହିପରି ନୀତିନିୟମରେ ଏହି ବ୍ରତ ପାଳନ କରାଯାଇଥାଏ।

## ପୁଷ ରବିବାର

ପୌଷ ମାସର ପ୍ରତି ରବିବାର ଦିନ ଏହି ବ୍ରତ ପାଳନ କରା ଯାଇଥାଏ। ଦେବଗଡ଼ ଅଞ୍ଚଳରେ ବିଶେଷତଃ ବୈଶ୍ୟ ଓ ଶୁଦ୍ର ସ୍ତ୍ରୀ ଲୋକମାନେ ଏହି ବ୍ରତ ପାଳନ କରିବା ଦେଖାଯାଏ। ଏହି ବ୍ରତ ଏକ ସୂର୍ଯ୍ୟ ଉପାସନା। କୁଷ୍ଠ ତଥା ଚର୍ମରୋଗର ନିରାକରଣ ବା ଉପଶମ ପାଇଁ ଏହି ବ୍ରତ ପାଳନ କରିଥାନ୍ତି। ସ୍ତ୍ରୀ ଲୋକେ ରବିବାର ଦିନ ପ୍ରତ୍ୟୁଷରୁ ଉଠି ଫୁଲ ତୋଳିବାକୁ ଯାଆନ୍ତି ଏବଂ ସ୍ନାନାଦି ନିତ୍ୟକର୍ମ ସାରି ତୁଳସୀ ଚଉରାମୂଳକୁ ଗୋବରରେ ଲିପି ପରିଷ୍କାର କରନ୍ତି। ମୁରୁଜରେ ମଣ୍ଡଳ କାଟି ସୂର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପନ କରାଯାଏ। ବ୍ରାହ୍ମଣ ଡାକି ଯଥାବିଧିରେ ସୂର୍ଯ୍ୟପୂଜା କରାଯାଏ। ପୂଜାରେ ଖଇ, ମୁଆଁ, କଦଳୀ, ଦହି ଓ ନଡିଆ ଆଦି ଭୋଗ ଲାଗେ। ଉପବାସୀ ମାନେ ସେଦିନ କେବଳ ଫଳାହାର କରି ରହନ୍ତି। ଏହି ବ୍ରତ ପଶ୍ଚାତରେ କିମ୍ବଦନ୍ତୀ ଅଛି ଯେ, ମରହଟ୍ଟା ଦେଶର ରଜାପୁଅ ଜଣେ ସାଧବର ରୂପବତୀ କନ୍ୟାକୁ ବିବାହ କଲେ। ସୌଦାଗର ଜଣକ ଅଜସ୍ର ସମ୍ପତ୍ତିର ଅଧିକାରୀ। ଏଣୁ ବିବାହ ପରେ ଝିଅକୁ ବହୁ ଧନରତ୍ନ ଦେଇ ବିଦାୟ ଦେଲେ। ବରକନ୍ୟା ଦେଶକୁ ଫେରିବା ବେଳକୁ ସୂର୍ଯ୍ୟ ଅସ୍ତ ହେବାକୁ ବସୁଥିଲେ। ଏହା ଦେଖି ସାଧବ ଝିଅ ଚିନ୍ତା କଲା ଯେ ସୂର୍ଯ୍ୟ ଅସ୍ତ ହୋଇଗଲେ ସେ ଆଣିଥିବା ଯୌତୁକ ରାଜ୍ୟବାସୀ ଦେଖି ପାରିବେ ନାହିଁ। ଏଣୁ ସେ ସୂର୍ଯ୍ୟଦେବତାଙ୍କୁ ସ୍ତୁତି କଲା ଯେ ସେ ଶାଶୁଘରେ ପହଞ୍ଚିବା ପରେ ସୂର୍ଯ୍ୟ ଅସ୍ତ ହୁଅନ୍ତୁ। ସାଧବ ଝିଅର ବିନୟ ପ୍ରାର୍ଥନାରେ ତୁଷ୍ଟ ହୋଇ ସୂର୍ଯ୍ୟଦେବ ବିଳମ୍ବରେ ଅସ୍ତ ଗଲେ। ତେଣେ ସୂର୍ଯ୍ୟଦେବଙ୍କ ମାତା ପୁତ୍ର ଆସିବା ବିଳମ୍ବ ଦେଖି ଉତ୍କଣ୍ଠିତ ହୋଇ ପଡିଲେ ଏବଂ ପୁତ୍ର ପହଞ୍ଚିବା ପରେ ବିଳମ୍ବର କାରଣ ପଚାରିଲେ। ସୂର୍ଯ୍ୟଦେବଙ୍କ ଠାରୁ ସମସ୍ତ ସମ୍ବାଦ ଶୁଣି ମା ଅଭିଶାପ ଦେଲେ ଯେ ଯିଏ ତାଙ୍କ ପୁଅକୁ ବାଟରେ ଅଟକାଇଲା ତାକୁ କୁଷ୍ଠ ରୋଗ ହେଉ। ଏହା ଶୁଣି ସୂର୍ଯ୍ୟଦେବ ମା'କୁ କହିଲେ ତାଙ୍କୁ ବାଟରେ କେହି ଅଟକାଇ ନାହାନ୍ତି। ସାଧବ ଝିଅର ଯୌତୁକ ଭାର ଦେଖୁ ଦେଖୁ ତାଙ୍କ ଆସିବା ବିଳମ୍ବ ହେଲା ଏବଂ ଅକାରଣରେ ସେ ସାଧବ ଝିଅକୁ ଅଭିଶାପ ଦେଲେ। ସୂର୍ଯ୍ୟଦେବ

ମା'ଙ୍କୁ ପଚାରିଲେ ତେବେ କି ଉପାୟ କଲେ ସାଧବ ଝିଅ ଏହି ଅଭିଶାପରୁ ମୁକ୍ତି ପାଇବ। ମା' ଉତ୍ତର ଦେଲେ, ଏହି ଅଭିଶାପରୁ ମୁକ୍ତି ପାଇବା ପାଇଁ ଏକମାତ୍ର ପନ୍ଥା ହେଉଛି ସୂର୍ଯ୍ୟ ଉପାସନା। ଏହି ଉପାସନା ପୁଷମାସ ରବିବାର ଦିନ କରା ହେବ। ସାଧବ ଝିଅ ପୁଷମାସ ରବିବାରରେ ସୂର୍ଯ୍ୟ ଉପାସନା କରି ଶାପଗ୍ରସ୍ତ କୁଷ୍ଠରୋଗରୁ ମୁକ୍ତି ଲାଭ କଲା।

ଦେବଗଡ଼ ଅଞ୍ଚଳରେ ପୁଷ ରବିବାର ପର୍ବ ପାଳନ ସାମାନ୍ୟ ଭିନ୍ନ ଧରଣର କରାଯାଉଥିବା ଦେଖାଯାଏ। ନିଃସନ୍ତାନା ସ୍ତ୍ରୀ ଲୋକେ ମଧ୍ୟ ଏଠାରେ ପୁଷ ରବିବାର ବ୍ରତ ପାଳନ କରିବା ଜଣାଯାଏ। ସେମାନେ ପାହାନ୍ତି ପ୍ରହରରୁ ଉଠି ସାହିକୁ ସାହି ବୁଲି ସାଙ୍ଗସାଥିମାନଙ୍କୁ ଡାକି ଫୁଲ ତୋଳନ୍ତି। ସାହିରେ ବୁଲିବା ବେଳେ ସେମାନେ ଗୀତ ବୋଲନ୍ତି -

*"ଆସ ଆସଲୋ ଟୁକ୍‌ଲି ମାନେ*
*ପୁଷ ରଇବାର କରିବା*
*ଆର ପାଲିକୁ ପୁଅ ନ ହେଲେ*
*ଘଇତାକୁ ମାରିବା।"*

ଆହୁରି ମଧ୍ୟ ଘରର ମୁଖ୍ୟମାନଙ୍କ ନାମରେ ଗୀତଯୋଡି ଗାଇବା ଶୁଣାଯାଏ। ସେ ଯାହାହେଉ, ସୂର୍ଯ୍ୟଙ୍କୁ ବୈଦିକ ଯୁଗରୁ ମଣିଷ ପୂଜା କରି ଆସୁଛି। ଯାସ୍କ ଋଷିଙ୍କ ମତରେ ସୂର୍ଯ୍ୟ ଦ୍ୟୁଲୋକରେ ବାସ କରୁଥିବା ଦେବତାମାନଙ୍କ ପ୍ରତିନିଧି ଅଟନ୍ତି। ଋଗ୍ ବେଦରେ ବର୍ଣ୍ଣନା କରାଯାଇଛି ଯେ -

*"ଅପ୍ରାଦ୍ୟାବା ପୃଥିବୀ ଅନ୍ତରୀକ୍ଷଂ*
*ସୂର୍ଯ୍ୟ ଆତ୍ମା ଜଗତ୍ ସ୍ତଥଷଷ୍ଟ।"*
*(ମଣ୍ଡଳ ୧ ସୂକ୍ତ ୧୧୫ ଶ୍ଳୋକ)*

ଅର୍ଥାତ୍ - ସ୍ଥାବର, ଜଙ୍ଗମ, ଚଳମାନ ଓ ଅଚଳର ଆତ୍ମା ଯେଉଁ ସୂର୍ଯ୍ୟ ସେ ସ୍ୱର୍ଗ, ପୃଥିବୀ, ଅନ୍ତରୀକ୍ଷ ପରିକ୍ରମଣ କରନ୍ତି, ଏଣୁ ବୈଦିକ ଯୁଗରୁ ସୂର୍ଯ୍ୟଙ୍କୁ ପାପମୋଚନକାରୀ ବୋଲି ପ୍ରାର୍ଥନା କରାଯାଇ ଆସୁଅଛି।

# କୁଚିଣ୍ଡା ଅଞ୍ଚଳର ମୁଖ୍ୟ ପର୍ବ

## ନୂଆଁଖାଇ

'ନୂଆଁଖାଇ' କୁଚିଣ୍ଡା ଅଞ୍ଚଳର ଏକ ମହାନ୍ ଗଣପର୍ବ। ଏହି ପର୍ବକୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଜାକ୍‌ଜମକରେ ପାଳନ କରିଥାନ୍ତି। ଏହା ଏକ କୃଷିଭିତ୍ତିକ ତଥା ମିଳନର ପର୍ବ। ଏହି 'ନୂଆଁଖାଇ' ପର୍ବକୁ ଅନ୍ୟ ଅଞ୍ଚଳରେ 'ନବାନ୍ନ'ର ଆଖ୍ୟା ଦିଆଯାଇଥାଏ। ଉପନିଷଦ୍‌ରେ କୁହାଯାଇଛି -

*"ଅଦ୍ୟତେ ଅତ୍ତିଚ ଭୂତାନି ତସ୍ମାଦନଂ ତଦୁଚ୍ୟତେ।*
*ଅହମନ୍ନମ-ହମନ୍ନ ମହମନ୍ନମ।*
*ଅହମନ୍ନାଦୋଽହମନୋଦେହମନ୍ନଦଃ।"*

ଅର୍ଥାତ୍ ଯେ ସମସ୍ତ ଚରାଚର ଜଗତକୁ ରଖନ୍ତି, ନିଜେ ଗ୍ରହଣ କରନ୍ତି, ଯେପରିକି ଡିମିରି ଫଳରେ କୃମି ଉତ୍ପନ୍ନ ହୁଅନ୍ତି ଏବଂ ସେହି ଭିତରେ ନଷ୍ଟ ହୁଅନ୍ତି ସେହିପରି ପରମେଶ୍ୱରଙ୍କ ଠାରେ ସମସ୍ତ ଜଗତର ଅବସ୍ଥା। ଏଣୁ ଈଶ୍ୱର ଅନ୍ନ, ଅତ୍ତା ଓ ଅନ୍ନଦାଃ ନାମରେ ଆଦୃତ ହୁଅନ୍ତି। (ତେ.ଉ୩/୧୦) ମତେ ଅନ୍ନ ହିଁ ବ୍ରହ୍ମ ଏବଂ ସୃଷ୍ଟି, ସ୍ଥିତି ଓ ପ୍ରଳୟର ନିୟନ୍ତକ। ମାନବ ଅନ୍ନର ସନ୍ଧାନ ପାଇବା ଦିନଠାରୁ ଅନ୍ନକୁ 'ଲକ୍ଷ୍ମୀ' ରୂପେ ପୂଜା କରି ଆସୁଛି। ବୈଦିକ ମତରେ ସେହି ଲକ୍ଷ୍ମୀ ହିଁ ପରମେଶ୍ୱର। ଏଣୁ କୁହାଯାଇଛି -

*"ଯୋ ଲକ୍ଷୟତି ପଶ୍ୟତ୍ୟଙ୍କତେ ଚିହ୍ନୟତି ଚରାଽଚରଂ ଜଗଦଥବା ବୈଦୈରାପୈ ର୍ୟୋଗିଭିଶ୍ଚ ଯୋ ଲକ୍ଷତେ ସ ଲକ୍ଷ୍ମୀଃ ସର୍ବ ପ୍ରଯେଶ୍ୱରଃ।"*
(ସତ୍ୟାର୍ଥ ପ୍ରକାଶ)

ଏଣୁ ଆବହମାନ କାଳରୁ ମଣିଷ ବର୍ଷରେ ପ୍ରଥମ ଫସଲ ଅନ୍ନକୁ 'ଲକ୍ଷ୍ମୀ' ବା 'ପରମେଶ୍ୱର'ଙ୍କ ଠାରେ ଅର୍ପଣ କରିଥାଏ। ଭାଦ୍ରବ ମାସରେ କେବଳ ଷାଠିଆ ଧାନର ଅମଳ ହୁଏ। ଏହି ଧାନ ବୁଣିବାର ଷାଠିଏ ଦିନରେ ପାଚେ। ତୈତିରୀୟ ସଂହିତା କହେ -

'ଷଷ୍ଟିକା ଷଷ୍ଟି ରାତ୍ରେଣ ପଚ୍ୟତେ।'

ନୂଆଁଖାଇର ଅବ୍ୟବହତ ପୂର୍ବରୁ ଗ୍ରାମର ଝାଙ୍କର ପ୍ରତ୍ୟେକ ଚାଷୀଙ୍କ କ୍ଷେତ୍ରରୁ ଗୋଟିଏ ଗୋଟିଏ ଧାନକେଣ୍ଡା ଆଣି ଗ୍ରାମଦେବୀ ବା ଇଷ୍ଟଦେବୀଙ୍କ ଠାରେ ଅର୍ପଣ କରିଥାଏ। ଗୃହର ମୁଖ୍ୟ ମଧ୍ୟ ନିଜ ଜମିରୁ ଧାନ ସଂଗ୍ରହ କରିଥାନ୍ତି। ଏତଦ୍‌ବ୍ୟତୀତ ଯେଉଁମାନଙ୍କ ଖେତରେ ଧାନ ହୋଇନଥାଏ ବା ସୁଖବାସୀମାନଙ୍କୁ ଝାଙ୍କର ସଂଗୃହୀତ ଧାନକୁ ଘରେ ଘରେ ନେଇ ଦିଏ। ଏତଦ୍‌ଦ୍ୱାରା ଭୂମିହୀନ ବା ସୁଖବାସୀ ମାନେ ମଧ୍ୟ ନୂଆଁଧାନ ପାଇପାରନ୍ତି। ଘରର ସ୍ତ୍ରୀଲୋକେ ପୂର୍ବରୁ ନିଜ ଘର ଅଗଣାକୁ ଗୋବରରେ ଲିପି ପରିଷ୍କାର ପରିଛନ୍ନ କରନ୍ତି ଏବଂ ନୂଆଁଖାଇ ଦିନ ସକାଳୁ ସ୍ନାନାଦି କରି ନୂଆଁଧାନ କୁଟି ଚାଉଳକୁ ପଞ୍ଚାମୃତ, ନଡିଆ, କଦଳୀ ଆଦି ମିଶାଇ ପ୍ରସ୍ତୁତ କରନ୍ତି। ପିଠାପଣା ଆଦି ହୁଏ। ପ୍ରଥମେ ଇଷ୍ଟଦେବୀ ବା ଲକ୍ଷ୍ମୀଙ୍କୁ ଭୋଗ ଅର୍ପଣ କଲାପରେ ପରିବାରର ସମସ୍ତେ ଏକତ୍ର ତଳେ ବସି ନବାନ୍ନ ଭକ୍ଷଣ କରନ୍ତି।

ଏହି ପର୍ବ ପାଳନ ପାଇଁ ବିଭିନ୍ନ ଜାତି, ଗୋଷ୍ଠୀର ଭିନ୍ନ ଭିନ୍ନ ସାମାଜିକ ପରମ୍ପରା ଚଳିଆସୁଛି। କେତେକେ ନୂତନ ଅନ୍ନର ପ୍ରସାଦ କୁରେଇ ପତ୍ରର ଖଲିରେ ପ୍ରସ୍ତୁତ କରିଥାନ୍ତି ଏବଂ ପରେ ଘରର ମୁଖ୍ୟ ପରିବାରର ପ୍ରତ୍ୟେକ ସଭ୍ୟଙ୍କୁ କୁରେଇ ପତ୍ରର ଦନାରେ ନବାନ୍ନ ଦିଅନ୍ତି। ତାପରେ ସମସ୍ତେ ଏକାଠି ବସି ପୂର୍ବଦିଗକୁ ମୁହଁକରି ଇଷ୍ଟଦେବୀଙ୍କୁ ସ୍ମରଣ କରି ନବାନ୍ନ ଭକ୍ଷଣ କରନ୍ତି। ନବାନ୍ନ ଭକ୍ଷଣ ପରେ ପୁଣି ଇଷ୍ଟଦେବୀଙ୍କୁ ପ୍ରଣତି ଜଣାଇ କନିଷ୍ଠ ମାନେ ବୟୋଜ୍ୟେଷ୍ଠ ମାନଙ୍କୁ ମୁଣ୍ଡିଆ ମାରନ୍ତି। ପରେ ଗ୍ରାମର ବୟୋଜ୍ୟେଷ୍ଠମାନଙ୍କୁ ଭେଟି ପ୍ରଣାମ କରି ସେମାନଙ୍କ ଠାରୁ ଆଶୀର୍ବାଦ ନିଅନ୍ତି।

ସେଦିନ ପରିବାରର ସମସ୍ତେ ନୂତନ ବସ୍ତ୍ର ପରିଧାନ କରନ୍ତି ଏବଂ ଅତିଥି ଅଭ୍ୟାଗତଙ୍କୁ ସାଦରେ ଭୂରି ଭୋଜନରେ ଆପ୍ୟାୟିତ କରନ୍ତି। ଏକଥା ସମାଜରେ ବହୁଦିନରୁ ଚଳି ଆସୁଛି। ଏ ବିଷୟରେ ଅଥର୍ବ ବେଦରେ ଗୃହସ୍ଥଙ୍କୁ କୁହାଯାଇଛି ଯେ – "ଏଷ୍ୟ ବା ଅତିଥିୟ ଛ୍ରୈତ୍ରିୟସ୍ତସ୍ମାତ୍ ପୂର୍ବୋ ନାଶ୍ନିୟାତ୍" ଅର୍ଥାତ୍ ହେ ଗୃହସ୍ଥ ! ଅତିଥିଙ୍କୁ (ଯେ ପୂର୍ବରୁ ନ ଜଣାଇ ହଠାତ୍ ଆସି ପହଞ୍ଚନ୍ତି) ଭୋଜନରେ ଆପ୍ୟାୟିତ କଲାପରେ ନିଜେ ଭୋଜନ କରିବ। ଏହି ଧରଣର ଉପଦେଶ ତୈତ୍ତରୀୟ ଉପନିଷଦ୍‌ରେ ମଧ୍ୟ ଦେଖିବାକୁ ମିଳେ। ସେଥିପାଇଁ ସାମାଜିକ ବ୍ୟବସ୍ଥା ଥିଲା ଯେ

ଭୋଜନ ସମୟରେ ଗୃହର ମୁଖ୍ୟଦ୍ୱାର ଖୋଲା ରଖିବ । ଖାଇ ବସିବା ପୂର୍ବରୁ ବାହାରକୁ ଯାଇ କେହି ଅତିଥି ଅଭ୍ୟାଗତ ଅଛନ୍ତି କି ଦେଖିବ । କେହିଥିଲେ, ସେମାନଙ୍କ ପାଇଁ ଭୋଜନର ବ୍ୟବସ୍ଥା କରି ଯାହା ବଳିବ ନିଜେ ଖାଇବ । ଏଥିଲା ଭାରତୀୟ ସଂସ୍କୃତିର ମହାନ୍ ପରମ୍ପରା । ଏହା କ୍ରମଶଃ ସମାଜରୁ ଲୋପ ପାଇବାକୁ ବସିଲାଣି । ସେହିଦିନ ଅପରାହ୍ନରେ ବିଭିନ୍ନ ଖେଳ ଓ ରାତିରେ ଗୀତ ଓ ନାଚର ଆସର ଜମେ । ଏହିପରି ଭାବେ ମହା ଆନନ୍ଦରେ ଦିନଟି ଅତିବାହିତ ହୁଏ । ଲୋକେ ପରସ୍ପରକୁ କୁହାକୁହି ହୁଅନ୍ତି –

*"ଜୀଇଁ ଜାଗିଥିଲେ ବଛରେ"*

ଅର୍ଥାତ୍ ବଞ୍ଚିଥିଲେ ପୁଣି ବର୍ଷକ ପରେ ନୂଆଁଖାଇ ପର୍ବ ପାଳନ କରିବାକୁ ହେବ ।

### ଦଶହରା

କୁଚିଣ୍ଡା ସବ୍‌ଡିଭିଜନ୍‌ର ସଦର ମହକୁମାରେ ଗତ ୭୫ ବର୍ଷ ତଳୁ ଦଶହରା ପର୍ବ ମହା ସମାରୋହରେ ପାଳିତ ହୋଇ ଆସୁଛି । ପ୍ରାୟ ମାସକ ପୂର୍ବରୁ ପୂଜା କମିଟିର ସଭ୍ୟଗଣ ଗାଁ କୁ ଗାଁ ବୁଲି ବୁଲି ଜନସାଧାରଣଙ୍କ ଠାରୁ ପୂଜା ପାଇଁ ଚାନ୍ଦା ସଂଗ୍ରହ କରନ୍ତି । କଳିକତାରୁ କାରିଗର ମାନେ ଆସି 'ମାଁ ଦୁର୍ଗା' ଓ ତାଙ୍କ ପାର୍ଶ୍ୱଦେବତାଙ୍କ ମୃଣ୍ମୟୀ ମୂର୍ତ୍ତି ତିଆରି କରିଥାନ୍ତି । ଆଶ୍ୱିନ ଶୁକ୍ଳପକ୍ଷ ଷଷ୍ଠୀ ଠାରୁ ଦଶମୀ ପର୍ଯ୍ୟନ୍ତ 'ମାଁ ଦୁର୍ଗା'ଙ୍କ ପୂଜା ମହା ସମାରୋହର ଅନୁଷ୍ଠିତ ହୁଏ । ଆଗେ ପୂଜାର ପାଞ୍ଚଦିନ ଯାକ ରାତିରେ 'ଅନ୍ନପୂର୍ଣ୍ଣା' ଥିଏଟର ଓ ଗଣନାଟ୍ୟ ଦ୍ୱାରା ବିଭିନ୍ନ ନାଟକ ପ୍ରଦର୍ଶିତ ହେଉଥିଲା । ଏସବୁ ଦେଖିବାକୁ କୁଚିଣ୍ଡା ଲୋକଙ୍କ ଭିଡ଼ ଜମେ । ଦଶହରା ଦିନ ମଧ୍ୟ ବିଭିନ୍ନ ଖେଳର ପ୍ରତିଯୋଗୀତା ହୁଏ ଓ ଶ୍ରେଷ୍ଠ ଖେଳାଳୀ ମାନେ ପୁରସ୍କୃତ ହୁଅନ୍ତି । ଦଶମୀ ଦିନ ରାତିରେ ଏକ ଶୋଭାଯାତ୍ରାରେ ଦେବୀଙ୍କ ମୂର୍ତ୍ତିକୁ ବିସର୍ଜନ କଲାପରେ ଦଶହରା ପର୍ବ ସମାପନ ହୁଏ ।

### କରମସାନୀ

କୁଚିଣ୍ଡା ଅଞ୍ଚଳର 'ମୁଣ୍ଡା' ଜନଜାତିର ଲୋକେ କରମସାନୀଙ୍କୁ ପୂଜା କରିଥାନ୍ତି । ଏହା ଏକ ମାତୃ ବା ଶକ୍ତି ପୂଜା । ଏ ପୂଜା ଭାଦ୍ରବମାସ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ହୁଏ । ଦଶମୀ ଦିନ ଗୋଟିଏ ଡାଲାରେ ଡାଲାଏ ଗଜାମୁଗ, ବିରି ଓ ଧାନକୁ ଘିଅ ଓ

ଗୋରସ ସହ ରଖାଯାଏ । ଏକାଦଶୀ ସକାଳେ ଉପବାସୀ ମାନେ ସେମାନଙ୍କ ପୂଜାରୀ ସହ ବଣକୁ କରମା ଗଛ ଡାଳ କାଟି ଆଣିବାକୁ ଯାଆନ୍ତି । ଯେଉଁ ଡାଳ କାଟନ୍ତି ସେହି ଡାଳରେ କୌଣସି ପକ୍ଷୀ ବା କୀଟପତଙ୍ଗ ମଳମୂତ୍ର ତ୍ୟାଗ କରିନଥିବେ; ଡାଳର ପତ୍ର ଗୁଡିକ ସିଧା ଓ ସୁନ୍ଦର ଥିବ ଓ ଡାଳଟି ମାଟିକୁ ସ୍ପର୍ଶ କରିନଥିବ । ପୂଜାରୀ ସେ ଅଞ୍ଚଳର ଜନଜୀବନର ନିରାପତ୍ତା ତଥା କୃଷିର ଉନ୍ନତି କାମନା କରି ପାଞ୍ଚ ବା ସାତଟି ପତ୍ର ଥିବା ଡାଳଟିଏ କୁରାଢ଼ିରେ କାଟିବେ । ସେହି ଡାଳକୁ ଉପବାସୀ ଯୁବକମାନେ ମାଦଳ ବଜାଇ, ମାଦଳର ତାଳେ ତାଳେ ନୃତ୍ୟ କରି ଗାଁକୁ ଆସିବେ ଏବଂ ପୂଜାସ୍ଥଳୀରେ ଡାଳକୁ ପୋତିବେ । ଡାଳର ଚାରିପାଖକୁ ଆମ୍ବ ଓ କଇଁ ପତ୍ରର ତୋରଣରେ ସୁନ୍ଦର ଭାବରେ ସଜାଇବେ । ଧୂପ, ଦୀପ, ଘିଅ, ଦହି, ସାରୁପତ୍ର, ନଡିଆ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଆଣି ପୂଜାରୀ ପୂଜା ଆରମ୍ଭ କରନ୍ତି । ପ୍ରଥମେ କରମା ଦେବୀଙ୍କ ପ୍ରାଣ ପ୍ରତିଷ୍ଠା କରି ଯଥାବିଧିରେ ପୂଜା କରାଯାଏ । ପୂଜା ପରେ ପୂଜାରୀ କରମାପୂଜାର କାହାଣୀ ଶୁଣାନ୍ତି । ଏହାପରେ ଉପବାସୀ ଯୁବକ, ଯୁବତୀ ଗଣ ହାଣ୍ଡିଆ ପିଇ ମାଦଳ ବାଦ୍ୟର ତାଳେ ତାଳେ ନାଚି ଦେବୀଙ୍କୁ ପରିକ୍ରମା କରନ୍ତି । ଗ୍ରାମବାସୀ ମଧ୍ୟ ଏହି ନୃତ୍ୟଗୀତରେ ମାତି ଯାଆନ୍ତି । ଏହି ପୂଜା 'ତଅପୋଇ'ର ଅନ୍ୟ ଏକ ରୂପ । କରମା ପୂଜାର କାହାଣୀରେ କୁହାଯାଇଛି ଯେ ଜଣେ ସାଧବର ସାତପୁଅ ସାତ ସମୁଦ୍ର ପାରି ହୋଇ ଡଙ୍ଗାରେ ବିଦେଶକୁ ବାଣିଜ୍ୟ କରିବାକୁ ଗଲେ । ବିଦେଶରୁ ବହୁ ଧନରତ୍ନ ଧରି ନିଜ ଗ୍ରାମକୁ ଫେରିଲେ । ସେମାନେ ଗାଁ ମୁଣ୍ଡରେ ରହି ସାନଭାଇକୁ ଗାଁର ବୋହୂ ଭୁଆସୁଣି ମାନଙ୍କୁ ଖବର ଦେବାପାଇଁ କହିଲେ । ବୋହୂ ଭୁଆସୁଣୀ ଆସି ସେମାନଙ୍କୁ ଗାଁ ଭିତରକୁ ପାଛୋଟି ନେବେ । ସାନଭାଇ ଆସି ଗାଁରେ ହେଉଥିବା କରମା ପୂଜାରେ ଯୁବକ ଯୁବତୀ ମାନଙ୍କ ସହ ଗୀତ ନାଚରେ ମାତିଗଲା । ତାପରେ ବଡଭାଇ ଗୋଟିଏ ପରେ ଗୋଟିଏ ଭାଇକୁ ପଠାଇଲେ । ସେମାନେ ମଧ୍ୟ ସାନଭାଇ ପରି ନୃତ୍ୟଗୀତରେ ମାତି ଫେରିଲେ ନାହିଁ । ସାନଭାଇମାନେ ନ ଫେରିବା ଦେଖି ବଡଭାଇ କ୍ରୋଧାନ୍ୱିତ ହୋଇ ପୂଜାସ୍ଥଳୀକୁ ଆସିଲା ଏବଂ କରମାଡାଳକୁ ଉପାଡି ପୂଜାସାମଗ୍ରୀ ସହ ଫୋପାଡି ଦେଲା । ସାନଭାଇ ନିଜ ସ୍ତ୍ରୀ ସହ ଅସି ପୁଣି କରମା ଡାଳକୁ ପୋତି ପୂଜାର୍ଚ୍ଚନା କଲେ । ଶେଷରେ ଦେବୀ ପ୍ରସନ୍ନ ହେଲେ ।

ପୂର୍ବପରି ରାତିସାରା ନାଚଗୀତ ଚାଲିଲା। ତା’ ପରଦିନ ସକାଳେ ତିନିଜଣ ଯୁବତୀ କରମାଡାଳକୁ ଧରି ନୃତ୍ୟଗୀତ ସହ ଗ୍ରାମ ପରିକ୍ରମା କରିବା ପରେ ନିକଟସ୍ଥ ପୋଖରୀରେ କରମସାନୀ ଦେବୀଙ୍କୁ ବିସର୍ଜନ କଲେ।

## ପୁଷ୍‌ପୁନି

କୁଚିଣ୍ଡା ଅଞ୍ଚଳର ‘ପୁଷ୍‌ପୁନି’ ଅନ୍ୟ ଏକ କୃଷିଭିତ୍ତିକ ଗଣପର୍ବ। କୃଷି ବର୍ଷର ଶେଷରେ ପୌଷ ମାସର ପୂର୍ଣ୍ଣିମା ଦିନ ଏହି ପର୍ବ ପାଳନ କରାଯାଇଥାଏ।

ସେଦିନ ଘରେ ଘରେ ପିଠାପଣା, ମାଛମାଂସ ଆଦି ପ୍ରସ୍ତୁତ କରି ଭୂରି ଭୋଜନ କରାଯାଏ। ପୂର୍ଣ୍ଣିମା ଦିନ ଜମିର ମାଲିକ ସେମାନଙ୍କ ଘରେ କାମ କରୁଥିବା ଗୋତିମାନଙ୍କୁ ଯାହା ପାଉଣା ବାକି ଥାଏ ତାହା ଦେଇ ନୂଆବର୍ଷ ପାଇଁ ପୁଣି ଚୁକ୍ତି କରନ୍ତି ଏବଂ ଗୋତିମାନେ ପ୍ରାୟ ଦୁଇ ତିନି ମାସ କୌଣସି ମାଲିକଙ୍କ ପାଖରେ କାମ ନକରି ସ୍ୱାଧୀନ ଭାବେ ବୁଲାଚଲା କରନ୍ତି ଏବଂ ବୈଶାଖ ତୃତୀୟା (ଅକ୍ଷୟ ତୃତୀୟା) ବେଳକୁ ଆସି ପୁଣି କାମରେ ଯୋଗଦିଅନ୍ତି।

ପୁଷ୍‌ପୁନି ଦିନ ଗ୍ରାମର ନିମ୍ନ ବର୍ଗର ବାଳକ ବାଳିକା ମାନେ ବାଦ୍ୟ ବଜାଇ ଘର ଘର ବୁଲି ‘ଛେର୍ ଛେରା’ ମାଗନ୍ତି। ସେମାନେ ଗାଆନ୍ତି –

*“ଛେର୍ ଛେରା ଛେର୍ ଛେରା*
*ଆଏଜ୍ ପୁନି କାଏଲ୍ ପୁନି*
*ଦିଅଗୋ ମା ଛେର୍‌ଛେରା।”*

ପରିବାର ଲୋକେ ଖୁସିରେ ସେମାନଙ୍କୁ ଧାନ, ଚାଉଳ, ପିଠା ଆଦି ଦେଇଥାନ୍ତି। ପିଲାମାନେ ସେସବୁ ନେଇ ଏକତ୍ର ମିଶି ଭୋଜି କରନ୍ତି। ଆଦିବାସୀ ଲୋକେ ଏହିଦିନ ଘରେ ଘରେ କୁସ୍‌ନା, ହାଣ୍ଡିଆ ରାନ୍ଧି ପିଅନ୍ତି ଏବଂ ରାତିରେ ତୋଫା ଜହ୍ନ ଆଲୁଅରେ ମାଦଳର ତାଳେ ତାଳେ ନୃତ୍ୟ କରି ରାତିଟି କାଟନ୍ତି। ପୂର୍ଣ୍ଣିମା ଦିନ ସେମାନେ ଘରେ ଘରେ ଖାସି, କୁକୁଡା, ବର୍‌ହା ଆଦି ମାଂସ ସହ ‘ଆଣ୍ଟୁ ପିଠା’ ମଧ୍ୟ ତିଆରି ହୁଏ।

ଏହିଦିନ ଆଦିବାସୀ ‘କିଷାନ୍’ ସଂପ୍ରଦାୟ ସେମାନଙ୍କ ମୁଖ୍ୟପର୍ବ ‘ନାଦୁ’ ପାଳନ କରନ୍ତି। ସେମାନେ ପୂଜାକରନ୍ତି ‘ବଣଦା’ ଦେବତାଙ୍କୁ। ଏହି ‘ବଣଦା’

ନାମ ବଣ ଶବ୍ଦରୁ ଆସିଥିବା ଜଣାଯାଏ। ଏହି ପର୍ବ ପ୍ରତିବର୍ଷ ପୌଷମାସ ଏକାଦଶୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ କରାଯାଏ। ଏହି ଛଅଦିନ ଯାକ ନାଚଗୀତର ଆସର ଜମେ। ପୌଷମାସରେ ପ୍ରଚଣ୍ଡ ଶୀତ ସତ୍ତ୍ୱେ ଜ୍ୟୋତ୍ସ୍ନାଧୌତ ରଜନୀର ମୁକ୍ତାକାଶ ତଳେ ସ୍ତ୍ରୀ ପୁରୁଷ, ଯୁବକ, ଯୁବତୀ ପାଦରେ ଘୁଙ୍ଗୁର ପିନ୍ଧି ପରସ୍ପର ଧରାଧରି ହୋଇ ମାଦଳର ତାଳେ ତାଳେ ନୃତ୍ୟକରନ୍ତି। ଏହାକୁ ରାଧାକୃଷ୍ଣଙ୍କ ରାସଲୀଳା ବୋଲି କୁହାଯାଏ। ଏହି ଛଅଦିନର ଯାତ୍ରା ଗୋଟିଏ ଗ୍ରାମରେ ନହୋଇ କିଷାନ୍ ସଂପ୍ରଦାୟର ଲୋକେ ବସବାସ କରୁଥିବା ବିଭିନ୍ନ ଗ୍ରାମମାନଙ୍କରେ ପୂର୍ବ ନିର୍ଦ୍ଧାରିତ ଦିନ ମାନଙ୍କରେ ହୁଏ। ଯାତ୍ରାସ୍ଥଳୀରେ ବଜାର ମଧ୍ୟ ହୁଏ। ପରଦିନ ସେମାନେ ସକାଳୁ ଯାତ୍ରା ବଜାରରୁ ବିଭିନ୍ନ ଖାଦ୍ୟ ତଥା ସୌଖିନ ଦ୍ରବ୍ୟ କିଣି ନାଚି ନାଚି ଘରକୁ ଫେରିଥାନ୍ତି। ସେମାନଙ୍କର ଏହି ନୃତ୍ୟକୁ ଉପଭୋଗ କରିଥାନ୍ତି ଗ୍ରାମବାସୀ ମାନେ।

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପରି କୁଚିଣ୍ଡା ସବ୍‌ଡିଭିଜନ୍‌ରେ ମଧ୍ୟ ରଥଯାତ୍ରା, ମକରଯାତ୍ରା ଆଦି ମହା ସମାରୋହରେ ପାଳନ କରାଯାଇଥାଏ। ଗୋବିନ୍ଦପୁର (ବାମରା)ର ମକରଯାତ୍ରା ଏ ଅଞ୍ଚଳର ପ୍ରସିଦ୍ଧ ଯାତ୍ରା ଅଟେ।

## କୁଚିଣ୍ଡା ଅଞ୍ଚଳର ପାଳିତ ଓଷା ଓ ବ୍ରତ

### ଭାଇ ଜିଉଁନ୍ତିଆ

ମା' ଦୁର୍ଗାଙ୍କର ବ୍ରତକୁ ଏହି ଅଞ୍ଚଳରେ ଭାଇ ଜିଉଁନ୍ତିଆ ଆଖ୍ୟା ଦିଆଯାଇଛି। ଏହି ବ୍ରତ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଦିନ ପାଳନ କରାଯାଏ। ଭାଇର ମଙ୍ଗଳ କାମନା କରି ବିବାହିତ, ଅବିବାହିତ ଭଉଣୀ ମାନେ ଏହି ବ୍ରତ ପାଳନ କରିଥାଆନ୍ତି। 'ଭାଇ ଜିଉଁନ୍ତିଆ' କୁଚିଣ୍ଡା ଅଞ୍ଚଳର ଏକ ପ୍ରଧାନ ବ୍ରତ। ଏହି ବ୍ରତ ପାଳନ ପାଇଁ ପ୍ରତିବର୍ଷ ଭଉଣୀମାନେ ବାପଘରକୁ ନିଶ୍ଚୟ ଆସିବେ। ବ୍ରତ ପୂର୍ବରୁ ପରିବାରର ଜଣେ ଝିଅର ଶାଶୁ ଘରକୁ ଯାଇ ଝିଅ ଜୋଇଁଙ୍କୁ ନିମନ୍ତ୍ରଣ କରନ୍ତି। ଝିଅ ମାନେ ଉପବାସର ପୂର୍ବଦିନ ରାତିରେ ଦୁଇ ଦଳରେ ବିଭକ୍ତ ହୋଇ ଗାଁ ଦାଣ୍ଡରେ ମନଖୋଲା ହୁମ ଗୀତ ଗାଆନ୍ତି। ସେମାନେ ଗାଉଥିବା ହୁମ ଗୀତର କିଛି ଅଂଶ ଏଠାରେ ଉଲ୍ଲେଖ କରାଗଲା –

*"ହୁମ, ହୁମ ହୁମ ହୁମ ବଉଳିରେ*
*ହୁମ ହୁମ ହୁମ ଦୁସରେ*

*ନ ଖାଉଁ ନ ପିଉଁ ଗୁଆ ପନସ*

*ନ ଯାଉଁ ତୁମରି ଦେଶ ବଉଲିରେ*

*ନ ଯାଉଁ ତୁମରି ଦେଶରେ ।"*

ବିବାହିତ ଯୁବତୀ ବର୍ଷକ ପରେ ଆସିଛି ତା ଜନ୍ମ ମାଟିକୁ । ପରିବାର ପରିଜନ, ସାଇ ପଡିଶା ଓ ସାଙ୍ଗସାଥିଙ୍କ ମେଳରେ ସେ କୋହଭରା ହୃଦୟର କାହାଣୀ ବଖାଣି ଯାଉଛି ସତେ ଅବା ପିଞ୍ଜରାବଦ୍ଧ ପକ୍ଷୀଟି ମୁକ୍ତିପାଇଁ ଘୂରି ବୁଲୁଛି ଅନନ୍ତ ଆକାଶରେ ଏବଂ ତାର ମଧୁଝରା କଣ୍ଠରୁ ଶୁଣାଯାଉଛି ବନ୍ଦୀ ଜୀବନର ଗାଥା –

*"ଦେଉଳେ ବାନ୍ଧିଲି ରାକ୍ଷୀରେ ବଉଳ*

*ଦେଉଳେ ବାନ୍ଧିଲି ରାକ୍ଷୀରେ*

*ମୋର ବାଗୀର୍ ନାଇ ସଂସାରେ ଦୁଃଖ୍ୟ*

*ଦଇବ ଦେଇଛେ ଲେଖ୍ୟରେ ବଉଳ*

*ଦଇବ ଦେଇଛେ ଲେଖ୍ୟ...."*

ଜନ୍ମଦାତ୍ରୀ ମାଆ ଯେ ତାର ରକ୍ତମାଂସରେ ଗଢ଼ିଛି ଝିଅକୁ । ଝିଅ ତାର ଦୁଃଖର କାହାଣୀ, ଅନ୍ତରର ବେଦନାକୁ ପ୍ରକାଶ କରି କହୁଛି –

*"ଆଗୋ ମାତା ଗର୍ଭଧାରୀ*

*ଜନମ୍ ଦେଲୁ ବେଳେ ନଦେଲୁ ମାରି*

*ମହତ୍ ଯାଉଛେ ସରିରେ ବଉଳ*

*ମହତ୍ ଯାଉଛେ ସରିରେ...."*

ଶାଶୁ ଶ୍ୱଶୁରଙ୍କ ନିର୍ଯାତନାରେ ଝିଅ ଏତେ ଅତିଷ୍ଠ ହୋଇ ପଡିଛି ଯେ, ସେ ସବୁ ପ୍ରକାଶ କରୁଛି ସାଙ୍ଗସାଥିଙ୍କ ମେଳରେ –

*"ଜନ୍ହ ପଡେ ଛନ ଛନରେ ବଉଳ*

*ଜନ୍ହ ପଡେ ଛନ ଛନରେ*

*ଉଦିଆରେ ଜନ୍ହ ଚଉଦ ଦିନ*

*କହିବି ଶଶୁର ଗୁନରେ ବଉଳ*

*କହିବି ଶଶୁର ଗୁନରେ...."*

'ହୁମ ଗୀତ' ମାଧ୍ୟମରେ ଝିଅ ଗୁହାରି କରି କହୁଛି -

*"ଧାନ ଦାଇଗଲି ହିରେ ରେ ବଉଲ*
*ଧାନ ଦାଇଗଲି ହିରେ ରେ*
*ଛୁଆଥିଲି ବଲି ଘର ଭିତରେ*
*ଦେଲ ମତେ ବଡା ଦୂରେ ରେ ବଉଲ*
*ଦେଲ ମତେ ବଡ଼ା ଦୂରେ ରେ ..."*

ଝିଅମାନେ ଅଷ୍ଟମୀ ଦିନ ନିର୍ଜଳା ଉପବାସ କରିବା ବିଧି ଅଛି କିନ୍ତୁ ଯେଉଁମାନେ ନିର୍ଜଳା ଉପବାସ କରିପାରନ୍ତି ନାହିଁ ସେମାନେ ସୂର୍ଯ୍ୟୋଦୟ ପୂର୍ବରୁ ଉଠି ଚୁଡା, କଦଳୀ ବା ପିଠା ଆଦି ଖାଇଥାଆନ୍ତି (ଏହାକୁ ଆଗ୍ରିଆ ଜାତିର ଲୋକେ ଉଠ୍‌ମନ କହନ୍ତି)। ଅଷ୍ଟମୀ ଦିନ ସଂଧ୍ୟାରେ ଝିଅମାନେ ଗାଧୋଇ ଶୁଦ୍ଧପୂତ ହୋଇ ନବବସ୍ତ୍ର ପରିଧାନ କରି ଦୁର୍ଗାଙ୍କୁ ପୂଜା କରନ୍ତି। ଏହି ପୂଜା କେହି କେହି ନିଜ ଘରେ କରନ୍ତି ବା ଗାଁ ମନ୍ଦିରରେ ଏକତ୍ରିତ ହୋଇ ପୂଜକ ଦ୍ୱାରା ଦୁର୍ଗାଙ୍କୁ ପୂଜା କରନ୍ତି। ପୂଜାସ୍ଥଳୀକୁ ସେମାନେ ବିଭିନ୍ନ ପ୍ରକାର ଫଳ ଓ ଅନ୍ୟାନ୍ୟ ସାମଗ୍ରୀ ନେଇ ଯାଇଥାନ୍ତି। ପୂଜା ଶେଷରେ ଭୋଗଧରି ଘରକୁ ଫେରନ୍ତି। ଝିଅମାନଙ୍କର ହୁଳହୁଳି ଶବ୍ଦରେ ଗାଁ ଦାଣ୍ଡ ଉଛୁଳି ଉଠେ। ପରଦିନ ସକାଳେ ସ୍ନାନାଦି ସାରି ଭାଇମାନଙ୍କୁ ନବବସ୍ତ୍ର ପିନ୍ଧାଇ ବନ୍ଦାଇବା ପରେ ପୂର୍ବପ୍ରସ୍ତୁତ ପିଠା, ମିଠା ଓ ଫଳ ଖାଇବାକୁ ଦିଅନ୍ତି। ଭାଇ ଖାଇସାରିବା ପରେ ଉପାସୀ ଭଉଣୀ ଜଳପାନ କରିବା ସହ ପ୍ରସାଦ ସେବନ କରେ। ଭାଇମାନେ ଭଉଣୀମାନଙ୍କୁ ନୂଆଁ ଶାଢ଼ୀ ଓ ଭଉଣୀମାନେ ଭାଇମାନଙ୍କୁ ନୂଆ ଧୋତି, ଗାମୁଛା ବା ପୋଷାକ ଦେବାର ବିଧି ରହିଛି।

### ପୁଅ ଜିଉଁନ୍ତିଆ

ଦୁତିବାହନ ଓଷାକୁ ଏ ଅଞ୍ଚଳରେ ପୁଅ ଜିଉଁନ୍ତିଆ କୁହାଯାଏ। ଏ ବ୍ରତ ପ୍ରତି ପୁତ୍ରବତୀ ମା ମାନଙ୍କର ଅଧିକ ଶ୍ରଦ୍ଧା। ମା ମାନେ ପୁଅ ମାନଙ୍କର ଦୀର୍ଘଜୀବନ କାମନା କରି ଏ ବ୍ରତ ପାଳନ କରନ୍ତି। ବ୍ରତଟି ପାଳିତ ହୁଏ ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀରେ। ଏ ବ୍ରତକୁ ସବୁ ଶ୍ରେଣୀର ସ୍ତ୍ରୀ ଲୋକେ ପାଳନ କରିଥାନ୍ତି। କେତେକ ନିଃସନ୍ତାନ ସ୍ତ୍ରୀ ମଧ୍ୟ ଏ ଉପବାସ ପାଳନ କରୁଥିବା ଦେଖାଯାଏ। ପୁତ୍ରସନ୍ତାନ ପାଇବା

ଆଶାରେ ପୂଜା ସ୍ଥଳୀରେ ଗୋଟିଏ ଗର୍ତ୍ତରେ ପାଣିପୂରାଇ ଶେଉଳ ମାଛ ଛଡା ଯାଏ। ବିଶ୍ୱାସ ଅଛି ଯେ ମାଛ ଯେଉଁ ନିଃସନ୍ତାନ ସ୍ତ୍ରୀ ଲୋକଙ୍କ ଉପରକୁ ଡେଇଁବ, ସେ ପୁତ୍ରବତୀ ହେବ। ଦୁତିଆ ଓଷା ବହିରେ ଉଲ୍ଲେଖ କରାଯାଇଛି ଯେ ସୂର୍ଯ୍ୟ ବିଧବା ବ୍ରାହ୍ମଣୀ ଘରକୁ ଆସି ତାକୁ ନ ପାଇବାରୁ ଅଗଣାରେ ଥିବା ଲେଉଟିଆ ଶାଗ ଉପରେ ରେତ ତ୍ୟାଗ କରିଥିଲେ ଏବଂ ସେ ଶାଗକୁ ବିଧବା ବ୍ରାହ୍ମଣୀ ଖାଇ ଗର୍ଭବତୀ ହେଲା। ଏ ବ୍ରତ ଏକ ସୂର୍ଯ୍ୟ ଉପାସନା।

ଉପବାସର ପରଦିନ ସକାଳେ ମା ମାନେ ସ୍ନାନାଦି କରି ପୁଅମାନଙ୍କୁ ନବବସ୍ତ୍ର ପିନ୍ଧାଇ ସିନ୍ଦୁର, ଚନ୍ଦନ ଲଗାଇବା ସହ ବନ୍ଦାନ୍ତି।

## ଲୋକନୃତ୍ୟ ବାଣ୍ଡିବୁତଲ

ପୂର୍ବ ଓଡ଼ିଶାରେ ଅନୁଷ୍ଠିତ ହେଉଥିବା 'ବାଣ୍ଡୀ ନାଟ'କୁ ପଶ୍ଚିମ ଓଡ଼ିଶାରେ 'ବାଣ୍ଡିବୁତଲ' କୁହାଯାଏ। ଏହି ନାଟ 'କୃଷ୍ଣଲୀଳା'ର ଅଂଶବିଶେଷ। ବଣ୍ଡୀ ହେଉଛି ଶ୍ରୀରାଧାଙ୍କ ସ୍ୱାମୀ ଚନ୍ଦ୍ରସେଣାର ଭଉଣୀ। ତାର ଚରିତ୍ର ଉପରେ ଏ ନାଟକ ଆଧାରିତ। ନୃତ୍ୟ ଖୋଲା ମଞ୍ଚରେ ହୁଏ ଏବଂ ଗାଁ ଗହଳର ବାଦ୍ୟ ଯଥା ଢ଼ୋଲ, ମାଦଳ, ଝାଞ୍ଜ, ଗିନି, ମହୁରୀ, ବଂଶୀ ପ୍ରଭୃତିକୁ ବଜାଯାଏ। କଳାକାର ମାନେ ପାଦରେ ଘୁଙ୍ଗୁର ପିନ୍ଧି ନୃତ୍ୟ କରନ୍ତି। କଳାକାର ଗଣ ନିଜେ ବାଦ୍ୟ ବଜାଇବା ସହ ଗୀତ ଗାଆନ୍ତି ଓ ନୃତ୍ୟ କରନ୍ତି। ପ୍ରଥମେ ଢ଼ୋଲିଆ ବିଭିନ୍ନ ପ୍ରକାର ବାଦ୍ୟ ବଜାଇ କଳାକାର ମାନଙ୍କୁ ମଞ୍ଚକୁ ନିମନ୍ତ୍ରଣ କରେ। ଏହି ଲୋକନୃତ୍ୟରେ ମୁଖ୍ୟ ଅଂଶ ଗ୍ରହଣ କରନ୍ତି ରାଧା, କୃଷ୍ଣ, ଦୂତୀ ଓ ଚନ୍ଦ୍ରସେଣା। ଢ଼ୋଲ ବାଦକ ମଧ୍ୟ ନୃତ୍ୟ ପ୍ରଦର୍ଶନ କରେ। ଏହାର ଆକର୍ଷଣ ହେଲା ବାଚନିକ ଅଭିନୟ ଓ ସଂଳାପ। ରାଧା କୃଷ୍ଣଙ୍କ ମିଳନରେ 'ବଣ୍ଡୀ' ସୃଷ୍ଟିକରେ ପ୍ରତିବନ୍ଧକ ଏବଂ କୃଷ୍ଣ ଦୂତୀର ମାଧ୍ୟମରେ ରାଧାଙ୍କ ନିକଟକୁ ପଠାଉଥିବା ସମ୍ବାଦ ବାଟମାରଣା କରେ। 'ବଣ୍ଡୀ' ଥିଲା ଚିରକୁମାରୀ। ସେ ମଞ୍ଚରେ ପୁରୁଷ ସମାଜକୁ ଆକୃଷ୍ଟ କରିବା ପାଇଁ ନିଜର ରୂପ ଯୌବନର ବର୍ଣ୍ଣନା କରିବା ସହ କେଉଁ ଜନ୍ମରେ କେଉଁ ରୂପରେ ଥିଲା ତାହା ବଖାଣିଥାଏ। ବଣ୍ଡୀର ସତ୍ୟଯୁଗର ନାମ ଥିଲା 'ଲିଳାବତୀ' ଏବଂ ସେଥିଲା ଲକ୍ଷ୍ମୀଙ୍କ ପ୍ରହରୀ। ତ୍ରେତୟା ଯୁଗରେ 'ତ୍ରିଜଟା' ନାମରେ ଅଶୋକ ବନରେ ସୀତାଙ୍କୁ ଜଗୁଥିଲା ଏବଂ ଦ୍ୱାପର ଯୁଗରେ ଥିଲା 'ଚନ୍ଦ୍ରସୁଷେଣ'ର କନ୍ୟା 'କୁଟିଳା' ଓ ରାଧାଙ୍କ ଜଗୁଆଳି। ସେ ନିଜର ରୂପବର୍ଣ୍ଣନା କରି ଗାଇଥାଏ –

*"ବୟସ ହେଲେ ମୋର ସୁଲ ସତର*
*ଉଦଆଁ ବେଲ ମୁଇଁ ଗୁଭା ମନ୍ଦାର*
*ଚେହେରା ଦେଖି ମୋର ମନକେ ରଖି*
*ସେ କଷି ଲେମ୍ବୋଉ ଗୋ ଭରିଛେ ରସ।"*

ନୃତ୍ୟର ମଧ୍ୟରେ ଚନ୍ଦ୍ରସେଣା ସହ ବଣ୍ଠୀର ବ୍ୟଙ୍ଗାତ୍ମକ କଥାବାର୍ତ୍ତା ଦର୍ଶକ ମାନଙ୍କୁ ବିଶେଷ ଭାବେ ଆକର୍ଷଣ କରିଥାଏ। ନାଟକଟି ଆହୁରି ଚିତ୍ତାକର୍ଷକ ହୁଏ ଯେତେବେଳେ ମାମୁଁ ଢ଼ୋଲିଆ ଓ ଭାଣଜୀ ବଣ୍ଠୀ ଦୁହେଁ ମିଶି ଦର୍ଶକ ମାନଙ୍କ ମଧ୍ୟରୁ ବର ଖୋଜନ୍ତି। ଦର୍ଶକ ମାନଙ୍କ ମଧ୍ୟରୁ କେତେକଙ୍କୁ ତାର ବର ହେବାପାଇଁ ସେ ଅଯୋଗ୍ୟ ବୋଲି ବର୍ଣ୍ଣନା କଲା ପରେ ଜଣେ ସୁନ୍ଦର ଯୁବକଙ୍କୁ ଇଏ ମୋର ବର ବୋଲି ଦାବି କରେ।

ନୃତ୍ୟରେ ବିବାହ ପରେ ବଣ୍ଠୀ ତାର ମନମୁତାବକ ଯୌତୁକ ଦେବାପାଇଁ ବଡଭାଇଙ୍କ ଠାରେ ଅଳି କରେ। ସେ କହେ –

*"ଆନିଦେବୁ ଝାରର ମଲ୍ଲି ଖୁସାନ ଖୁଚମି ଗୋ,*
*ଖୁସାନ ଖୁଚିମି।*
*ଦରପନ୍ ଗୁଟେ ଆନି ଦେବୁ*
*ମୁଖ ଦେଖୁଥିମି।"*

ବଣ୍ଠୀ ରାଧା ଓ ଚନ୍ଦ୍ରସେଣାକୁ ସର୍ବଦା ସତର୍କ କରେ ଲମ୍ପଟୀ କୃଷ୍ଣଙ୍କ ଠାରୁ ଦୂରେଇ ରହିବାକୁ।

ବଣ୍ଠୀ ବଡଭାଇ ଆଗରେ ଭଉଣୀ ରାଧାଙ୍କ ଗତିବିଧି ନେଇ ଅଭିଯୋଗ କରେ –

*"ଦଦା ଗୋ ଦଦା,*
*ମୋର୍ ବହୁ ତ ଆଏ ପରା ବୁଲି,*
*ମତେ ଦେଖିଲେଁ ମୁହୁଁ କୁହଁଡା*
*ଦୂତୀ ସଙ୍ଗେ ଯାଏସନ୍ ବୁଲି।"*

'ବାଣ୍ଠୀବୁଡଲ' ନୃତ୍ୟରେ ପ୍ରତ୍ୟେକ ନିଜର ଜନ୍ମ ବୃତ୍ତାନ୍ତ ସହ ନିଜ ନିଜର ଭୂମିକା ଗୀତ ମାଧ୍ୟମରେ ପ୍ରକାଶ କରିଥାଆନ୍ତି।

❑❑❑

# ପର୍ଯ୍ୟଟକଙ୍କ ଭୂସ୍ୱର୍ଗ
## ବାମଣ୍ଡା

ପ୍ରକୃତିର ଗନ୍ତାଘର ଅଖୋଜ ବାମଣ୍ଡାକୁ ପର୍ଯ୍ୟଟକଙ୍କ ଭୂସ୍ୱର୍ଗ କହିଲେ ଅତ୍ୟୁକ୍ତି ହେବନାହିଁ। ଯେ ଥରେ ବାମଣ୍ଡାର ଘନ ଅରଣ୍ୟାନୀ ମଧ୍ୟରେ ବୁଲିଛି, ଗିରି-ନିର୍ଝରର ଦୃଶ୍ୟ ଦେଖିଛି ଏବଂ ବନପକ୍ଷୀର କାକଳି ତଥା ବନ୍ୟ ପଶୁର ହେଣ୍ଟାଳ ଶୁଣିଛି, ସେ କେବେ ବାମଣ୍ଡାକୁ ଭୁଲି ପାରିବ ନାହିଁ। ତା ଆଖିରେ ବାରମ୍ବାର ନାଚି ଉଠିବ ସେଇ ଦୃଶ୍ୟ ଏବଂ ତାର ମନ ବିହ୍ୱଳିତ ହେବ ପୁନର୍ବାର ପ୍ରକୃତିର ସେଇ ଅପରୂପ ସୌନ୍ଦର୍ଯ୍ୟର ଦର୍ଶନ ପାଇଁ। ଅନେକ ଗୁଡ଼ିଏ ପର୍ଯ୍ୟଟନ ସ୍ଥଳୀ ମାନଙ୍କ ମଧ୍ୟରୁ ନିମ୍ନରେ ତିନୋଟି ବିଶିଷ୍ଟ ସ୍ଥଳୀ ସମ୍ବନ୍ଧରେ ଉପସ୍ଥାପନ କରାଯାଇଛି।

**ପ୍ରଧାନପାଟ -** ପୂର୍ବତନ ଗଡଜାତ ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ ସହରର ଉତ୍ତର ଦିଗରେ ଅବସ୍ଥିତ କୈଦନ୍ତା ପର୍ବତର ସାତଟି କୁଣ୍ଡରେ ଭଉଁରୀ ଖେଳି ଗିରି-ନିର୍ଝରଟି ଲମ୍ଫ ଦେଉଛି ଶିଖର ଦେଶରୁ ଗିରି-ଗହ୍ୱରକୁ। ସୃଷ୍ଟି କରିଛି ପ୍ରପାତ। ଏହି ପ୍ରପାତ 'ପ୍ରଧାନପାଟ' ନାମରେ ଅଭିହିତ। ପ୍ରପାତରୁ ଜଳ ଧାରକୁନେଇ ରାଜଧାନୀ ଦେବଗଡ଼-ବାସୀଙ୍କୁ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା କରାଯାଇଛି। ପ୍ରଧାନପାଟ ପ୍ରପାତର ଜଳରୁ ଜଳ ସେଚନ କରାଯାଏ ରାଜାଙ୍କ ଉଦ୍ୟାନ 'ବଡ ବଗିଚା'କୁ, ଫଳରେ ଚିର ହରିତ ଉଦ୍ୟାନ ବର୍ଷସାରା ଯୋଗାଏ ଫଳ, ଫୁଲ ଓ ପନିପରିବା।

ପ୍ରକୃତିର ଅନବଦ୍ୟ ଦାନ ଏହି ପ୍ରଧାନ ପାଟ ଜଳପ୍ରପାତର ଚତୁଃପାର୍ଶ୍ୱରେ ପରିବେଷ୍ଟିତ ବନଭୂମି ବାସ୍ତବରେ ମର୍ତ୍ତ୍ୟର ଭୂସ୍ୱର୍ଗ। ଏହା କେବଳ ଦର୍ଶକ ହିଁ ଅନୁଭବ କରି ପାରିବ। ଘନ ବୃକ୍ଷଭରା ସୁଶୀତଳ ଛାୟା, ମୃଦୁଳ ସମୀରଣ, ବନପକ୍ଷୀଙ୍କ ସୁମଧୁର କାକଳି, ପହିଲି ଆଷାଢ଼ର ଆଗମନରେ ମେଘମେଦୁର ଆକାଶ ଦର୍ଶନରେ ନୃତ୍ୟରତା ମୟୂରୀର ନୃତ୍ୟ ଲାସ୍ୟ ଯେ କେତେ ମନମୁଗ୍ଧକର ତାହା ଅବର୍ଣ୍ଣନୀୟ।

ଏହାର ଦୃଶ୍ୟରେ ମନ୍ତ୍ରମୁଗ୍ଧ ହୋଇ ରାଜକବି ସଚ୍ଚିଦାନନ୍ଦ 'ବସନ୍ତ ନିବାସ'ର 'ଉଦ୍‌ବୋଧନ' କବିତାରେ ଲେଖିଛନ୍ତି -

*"ପ୍ରଧାନ ପ୍ରଧାନପାଟ ଶିଖର ଦେହରେ*
*କର୍ଣ୍ଣ ରସାୟନ ଯହିଁ ଫୁଟ୍ସ୍କୋକିଳ ରତୁ*
*ମିଶି ସୁଲଳିତ ତାନେ ଭରତିଆ ସ୍ୱନେ*
*ପ୍ରପାତେ ପ୍ରପାତ ବନ୍ଧୁ ମଧୁର କୂଜନେ*
*ମୁଖରିତ କରେ ସଦା ବନ-ଦରି-କୋଳ*
*ପ୍ରସ୍ରବଣ ଜଳକଣା ଅନ୍ତଃସାର ରୂପୀ*
*ସୁବାସ ସମୀର କୋଳେ ନିତ୍ୟ ଖେଳି ବୁଲେ*
*ସୁସ୍ନିଗ୍ଧ-ସୁରମ୍ୟ-ନୀଳ ବ୍ୟୋମପଟ ତଳେ*
*ରସାଇ ଜଙ୍ଗମ ପୁଣି ରସାଇ ସ୍ଥାବରେ*
*ବସନ୍ତର ସ୍ମୃତି ସଦା ମନେ ଉପୁଜାଇ;"*

ଏହି ମନୋହର ପ୍ରକୃତି କୋଳରେ ପ୍ରକୃତି ପ୍ରେମୀ ବାମଣ୍ଡାଧୀଶ୍ୱର ରାଜକବି ସଚ୍ଚିଦାନନ୍ଦ ଏକ ସୁରମ୍ୟ ଅଟ୍ଟାଳିକା ନିର୍ମାଣ କରି ନାମକରଣ କରିଥିଲେ 'ବସନ୍ତ ନିବାସ' ଏବଂ ଶିଳାଖଣ୍ଡରେ ଖୋଦିତ କବିତାର ଏକ ପଂକ୍ତି ଏଠାରେ ଉଲ୍ଲେଖ କରାଗଲା। 'ବସନ୍ତ ନିବାସ'ର ଶେଷ ଅକ୍ଷରକୁ ପରିବର୍ତ୍ତ୍‌ନ କରି ତିନୋଟି ଯାକ ଶ,ଷ ଓ ସ କୁ ନେଇ ତିନୋଟି କବିତା ଲେଖିଛନ୍ତି। ଏଠାରେ କେବଳ 'ବସନ୍ତ ନିବାଶ'ର କବିତାଟି ଦର୍ଶାଇଲି -

*"କଳକଣ୍ଠ ଯହିଁ ନିରତେ କୂଜଇ*
*ସୁରମ୍ୟ ବସନ୍ତ ରାଗରେ,*
*ରସାଇ ପ୍ରେୟସୀ-କୋକିଳା-ହୃଦୟ*
*ଭସାଇ ସମୀର-ସାଗରେ*
*ନିତ୍ୟରେ, ଭ୍ରମର ଗୁଞ୍ଜନ ମିଶଇ*
*ସେହି ଏ ବସନ୍ତ -ନିବାଶ ଯହିଁରେ*
*ବସନ୍ତ- ବିହଗ ରମଇ।"*

ପ୍ରଧାନ ପାଟ ଜଳ ପ୍ରପାତର ନିମ୍ନ ଦେଶରେ ଛିଡ଼ା ହୋଇ ପର୍ଯ୍ୟଟକ ଯାହା ପଚାରିଲେ ପ୍ରତିଧ୍ୱନି ଛଳରେ ସେ ଉତ୍ତର ଦିଏ।

**ଗୁଦ୍‌ଗୁଦା ଜଳପ୍ରପାତ** - ଏହି ପ୍ରପାତଟି ଖଣ୍ଡାଧାର ପର୍ବତର ଏକ ଅଂଶର ଉତ୍ତରରେ ଅବସ୍ଥିତ। ପ୍ରପାତ ସ୍ଥାନକୁ ସିଧାସଳଖ ଯିବାପାଇଁ ଯାନବାହନର ସୁବିଧା ନାହିଁ। ସମ୍ବଲପୁର ଠାରୁ ୧୧୭ କି.ମି ଦୂରତ୍ୱ ଏହି ସ୍ଥାନକୁ ଯିବାପାଇଁ ୧୦୭କି.ମି ଯାତ୍ରୀ ବାହୀ ବସ୍‌ରେ ବାକି ୧୦ କି.ମି. ଟ୍ରେକର୍‌ରେ ବା ଚାଲିଯିବାକୁ ପଡେ। ପର୍ବତର ଝରଟିଏ ଦୂର ସ୍ଥାନରୁ ବହି ଆସି ଏଠାରେ ପ୍ରପାତ ସୃଷ୍ଟି କରିଛି। ଚାରିପାଖରେ ଘନ ଜଙ୍ଗଲ। ଋତୁରାଜ ବସନ୍ତର ଚିର ଆବାସସ୍ଥଳୀ ଏହି ସ୍ଥାନଟି। ପକ୍ଷୀ, କୀଟ, ପତଙ୍ଗ, ସରୀସୃପ ମାନଙ୍କ ଏ ସ୍ଥଳ ବିଶେଷ ଆକର୍ଷଣୀୟ। ବଣଭୋଜି ପାଇଁ ସ୍ଥାନଟି ଅତି ଉତ୍କୃଷ୍ଟ। ବର୍ଷରେ ନଭେମ୍ବର ଠାରୁ ଜାନୁୟାରୀ ମାସ ଯାଏ ପର୍ଯ୍ୟଟକ ତଥା ଆମୋଦ ପ୍ରମୋଦକାରୀଙ୍କ ଏଠାରେ ଭିଡ଼ ଜମେ। ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ତଥା ଗୁଦ୍‌ଗୁଦାକୁ ବସ୍ ଯାତାୟାତର ବ୍ୟବସ୍ଥା କଲେ ଏ ସ୍ଥାନ ପର୍ଯ୍ୟଟନ କେନ୍ଦ୍ରର ମାନ୍ୟତା ପାଇପାରିବ।

**ଭାଇଭଉଣୀ ପ୍ରପାତ** - ଏହା ଏକ କ୍ଷୁଦ୍ର ଜଳପ୍ରପାତ। ଦୁଇଟି ଗଣ୍ଡ ଏକତ୍ରିତ ହୋଇଥିବାରୁ ଏହାକୁ ଭାଇ-ଭଉଣୀ ବୋଲି କୁହାଯାଏ। ଏହି ସ୍ଥାନଟି ଦେବଗଡ଼ ସବ୍‌ଡିଭିଜନସ୍ଥ (ବର୍ତ୍ତମାନର ଦେବଗଡ଼ ଜିଲ୍ଲା) ବୁଢ଼ାପାଳ ଗ୍ରାମର ଉତ୍ତର ଦିଗରେ ପ୍ରାୟ ଦୁଇ କିଲୋମିଟର ଦୂରରେ ଅବସ୍ଥିତ। ଭାଇ-ଭଉଣୀ ପର୍ବତର ପଛର ପୂର୍ବପାଖେ ହିଞ୍ଜୁଲୀ ନଦୀରେ ଏହି ପ୍ରପାତ ସୃଷ୍ଟି। ନଦୀଟି ପାହାଡ଼ ଉପରୁ ଯେପରି ଘର୍ଘର ନାଦରେ ଡେଇଁ ପଡୁଛି ଭୂପୃଷ୍ଠକୁ ଏବଂ ତଳେ ପର୍ବତ କନ୍ଦରରେ ଦୁଇଟି ଗଣ୍ଡ ସୃଷ୍ଟି ହୋଇଛି। ଏଠାରେ ପ୍ରତ୍ୟକ୍ଷ ଦେବୀ 'ପଦ୍ମାସିନୀ' ବିରାଜମାନ କରି ସ୍ଥାନର ମହିମା ବୃଦ୍ଧି କରିଛନ୍ତି। ଏହି ସ୍ଥଳୀର ପ୍ରାକୃତିକ ଶୋଭା ଅତୀବ ମନୋରମ। କିମ୍ବଦନ୍ତୀ ଅଛି ଯେ ଉପରୋକ୍ତ ଗଣ୍ଡ ମଧ୍ୟରେ ଗୋଟିଏ ମନ୍ଦିର ଅଛି। ଜଣେ ମତ୍ସ୍ୟଜୀବୀ ମାଛ ଧରିବାକୁ ଯାଇ ନିଖୋଜ ହୋଇଗଲେ ଏବଂ ମନ୍ଦିର ଭିତରେ ଦଶଦିନ ରହିଗଲେ। ସେ ମନ୍ଦିରକୁ ଜଳ ଆଦୌ ସ୍ପର୍ଶ କରେ ନାହିଁ। ଏକାଦଶ ଦିନ ସେ ଗଣ୍ଡ କୂଳରେ ଶୋଇଥିବା ଦେଖି ଲୋକେ ଆଚମ୍ବିତ ହୋଇଗଲେ।

ବର୍ତ୍ତମାନ ୨୦୦ ନମ୍ବର ଜାତୀୟ ରାଜପଥ ଏହି ବାଟ ଦେଇ ଯାଇଛି ଏବଂ ଯାତ୍ରୀବାହୀ ବସ୍ ଗୁଡିକ ଏହି ଶକ୍ତିପୀଠରେ କିଛି ସମୟ ଅଟକି ଯାଏ ଏବଂ ଭକ୍ତଗଣ ପୂଜାଅର୍ଚ୍ଚନା କରିଥାନ୍ତି । ଏଥିରେ ଚୈତ୍ରପୂର୍ଣ୍ଣିମା ଦିନ ଯାତ୍ରା ମଧ୍ୟ ହୋଇଥାଏ । ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ଏହାର ସୁରକ୍ଷା ତଥା ବିକାଶ ପାଇଁ ଦୃଷ୍ଟି ଦେଲେ ପ୍ରାକୃତିକ ପରିବେଶଘେରା ଏହି ସ୍ଥଳଟି ଅଧିକ ଆକର୍ଷଣୀୟ ହୋଇପାରନ୍ତା ।

**ଦେଓଧର ପ୍ରପାତ** – ଏହା ଏକ ସୁଦୃଶ୍ୟ ଜଳପ୍ରପାତ । ଜାତୀୟ ରାଜପଥ ନଂ ୬ରୁ ୩ରି କିଲୋମିଟର ଭିତରେ ଦେବଗଡ଼ର କଂସର ଅଞ୍ଚଳରେ ଗୋହିରା ନଦୀରେ ଏହା ଅବସ୍ଥିତ । ଏହାକୁ ଦେବଗଡ଼ ଜିଲ୍ଲାପାଳ ଏକ ପର୍ଯ୍ୟଟନ କେନ୍ଦ୍ର ରୂପେ ଘୋଷଣା କରିଛନ୍ତି । ଏଠାରେ ଶୀତଋତୁରେ ଅନେକ ପର୍ଯ୍ୟଟକ ବଣଭୋଜି କରିବାକୁ ଆସନ୍ତି ।



# ସହାୟକ ଗ୍ରନ୍ଥ


୧. ମାଦଳା ପାଞ୍ଜି

୨. ଓଡ଼ିଶା ଇତିହାସ - ପ୍ରଥମ ଓ ଦ୍ୱିତୀୟ ଭାଗ - ଡ଼କ୍ଟର ଯଜ୍ଞ କୁମାର ସାହୁ

୩. କୋଶଳାନନ୍ଦ କାବ୍ୟମ୍ - ଓଡ଼ିଆ ଅନୁବାଦ ଡ଼କ୍ଟର ଯଜ୍ଞ କୁମାର ସାହୁ

୪. ଆବାହନ - ରାଜା ସଚ୍ଚିଦାନନ୍ଦ ଦେବ

୫. ସଂକ୍ଷିପ୍ତ କୋଶଳ-ପାଟଣା ଇତିହାସ - ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ

୬. ସମ୍ବଲପୁର ଇତିହାସ - ଶ୍ରୀ ଶିବ ପ୍ରସାଦ ଦାଶ

୭. ବୀର ସୁରେନ୍ଦ୍ର ସାଏ - ଶ୍ରୀ ଅନିରୁଦ୍ଧ ଦାଶ

୮. Surendra Sai - Captain Radhakanta Mishra

୯. ବାସୁଦେବ ଗ୍ରନ୍ଥାବଳୀ - ସଂପାଦନା ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

୧୦. ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ - ସଂପାଦନା ଓ ସଂକଳନ - ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

୧୧. ରେଭେନ୍ୟୁ ନିୟମାବଳୀ - ବାମଣ୍ଡା ଷ୍ଟେଟ୍ - ୧୯୨୯

୧୨. ସାର୍ ବାସୁଦେବ ସୁଢ଼ଳଦେବ - ଡ଼କ୍ଟର ରାମଚନ୍ଦ୍ର ବ୍ରହ୍ମା

୧୩. ସମ୍ବଲପୁର ହିତୈଷିଣୀ - ଏକ ଅଧ୍ୟୟନ - ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

୧୪. ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମ - କୁମାର ହସନ୍

୧୫. ବାମଣ୍ଡା ପ୍ରଜା ଆନ୍ଦୋଳନ - ଶ୍ରୀ ଗୁଣନିଧି ଗୌନ୍ତିଆ

୧୬. ଅଗ୍ନିତୀର୍ଥ - କୋଲାବିରାର କ୍ରାନ୍ତି ଗାଥା - ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

୧୭. ସୋନପୁରର ଇତିହାସ - ୧ମ ଓ ୨ୟ ଖଣ୍ଡ - ଶ୍ରୀ ସଦାନନ୍ଦ ଅଗ୍ରୱାଲ

୧୮. ପୂର୍ବ ଭାରତର ହିନ୍ଦୁ ଲୋକମିଥ୍ , ଓଡ଼ିଶା - ଡକ୍ଟର ପ୍ରସନ୍ନ କୁମାର ମିଶ୍ର

୧୯. ସୋନପୁର ସ୍ମରଣିକା - ଡକ୍ଟର ପବିତ୍ର ମୋହନ ନାୟକ

୨୦. ବଡ଼କୁମାର ବଳଭଦ୍ର ଗ୍ରନ୍ଥାବଳୀ (୧୯୩୨)

୨୧. ଜଳନ୍ଧର ରଚନାବଳୀ (୧୯୭୭)

୨୨. ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ - ଡ଼କ୍ଟର ଗୋପାଳଚନ୍ଦ୍ର ମିଶ୍ର

୨୩. Development of Secondary Education in Orissa, 1882-1966, Dr. V.B. Shastry

୨୪. Orissa District Gazetteers, Sambalpur, 1971.

୨୫. ବିବାହ ବିଚାର - ଶ୍ରୀ ଜଳନ୍ଧର ଦେବ

୨୬. ହିରଣ୍ୟଗର୍ଭ - ଶ୍ରୀ ଗୋରେଖନାଥ ସାହୁ
୨୭. ରାଜା ସାର୍ ବାସୁଦେବ ସୁଢ଼଼଼଼଼ଳଦେବ - ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର
୨୮. ଖୋଲା ଝରକା - ବାଳକୃଷ୍ଣ କର
୨୯. ସ୍ମରଣିକା, ଲୋକ ମହୋତ୍ସବ, ସମ୍ବଲପୁର, ୨୦୦୪
୩୦. ସ୍ମରଣିକା, ଆଦିବାସୀ ଲୋକ ମହୋତ୍ସବ, କୁଚିଣ୍ଡା, ୨୦୦୫
୩୧. ସ୍ମରଣିକା, ଲୋକମହୋତ୍ସବ, ସମ୍ବଲପୁର, ୨୦୦୫
୩୨. ସ୍ମରଣିକା, ଲୋକମହୋତ୍ସବ, ସମ୍ବଲପୁର, ୨୦୦୬
୩୩. ସ୍ମରଣିକା, ତୃତୀୟ ଆଦିବାସୀ ଲୋକମହୋତ୍ସବ, କୁଚିଣ୍ଡା, ୨୦୦୬
୩୪. ରାଜା ବାସୁଦେବ ହାଇସ୍କୁଲ, ଦେବଗଡ଼, ଶତବାର୍ଷିକୀ ସ୍ମରଣିକା, ୧୯୮୩
୩୫. କୋଶଳ ଶକ୍ତି - ଶ୍ରୀ ଧରଣୀଧର ପ୍ରଧାନ
୩୬. ଦିବ୍ୟଶଙ୍କର କୋଇଲି - ଶ୍ରୀମତୀ ଆଶା କୁମାରୀ ଦେବୀ
୩୭. ମନ୍ଦାକିନୀ - ମନ୍ଦାକିନୀ ବାଳିକା ବିଦ୍ୟାଳୟର ଶତବାର୍ଷିକୀ ସ୍ମରଣିକା, ୨୦୦୪ ।





▲ ଗୁଦଗୁଦା ଜଳପ୍ରପାତ

ସୌଜନ୍ୟ : ବର୍ଣ୍ଣାଳୀ, କୁଚିଣ୍ଡା



▶ ଜଗନ୍ନାଥ ବଲ୍ଲଭ ପ୍ରେସ

ବର୍ତ୍ତମାନ ସରକାରୀ ମୁଦ୍ରଣାଳୟ



ଝାଡ଼େଶ୍ୱର ମନ୍ଦିର



ଇତିହାସର ଅବତାରଣା କେବଳ ବର୍ତ୍ତମାନ ପାଇଁ ନୁହେଁ, ଭବିଷ୍ୟତ ପାଇଁ, ଭବିଷ୍ୟତ ବଂଶଧରଙ୍କ ପାଇଁ । ଇତିହାସଟା କାଳ୍ପନିକ କାହାଣୀ ନୁହଁ, ବିଶଦଗବେଷଣା-ପ୍ରସୂତ ଅତୀତର ଇତିକଥା । କେତେ ଅନୁଭବ ଓ ଅନୁଭୂତିରେ ପରିପୂର୍ଣ୍ଣ ଇତିହାସ । ଅଖୋଜ ବାମଣ୍ଡାର ଇତିହାସକୁ ପାଠକଙ୍କ ପାଖକୁ ନେଇ ଆସିଛନ୍ତି ପ୍ରାବନ୍ଧିକ ବାଳକୃଷ୍ଣ କର ।

ଶ୍ରୀଯୁକ୍ତ ବାଳକୃଷ୍ଣ କରଙ୍କ ଜନ୍ମ ପୂର୍ବତନ ଗଡ଼ଜାତ ବାମଣ୍ଡାର କୁଚିଣ୍ଡା ସବ୍‌ଡ଼ିଭିଜନ୍ ଅନ୍ତର୍ଗତ ଏକ ଅଖ୍ୟାତ ପଲ୍ଲୀ ପାରୁଆଭାଡିରେ ୧୯୩୨ ମସିହା ଜାନୁଆରୀ ମାସ ୨୧ ତାରିଖ ପୌଷ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ । ସମାଜସେବୀ ଓ ସ୍ୱାଧୀନତାସଂଗ୍ରାମୀ ସ୍ୱର୍ଗତ ବିଶ୍ୱନାଥ କର ଏବଂ ସ୍ୱର୍ଗତ ଲବଙ୍ଗଲତା କରଙ୍କ ସେ ହେଉଛନ୍ତି ଜ୍ୟେଷ୍ଠ ସନ୍ତାନ । ବାମଣ୍ଡା ରାଜ୍ୟର ରାଜଧାନୀ ଦେବଦୁର୍ଗ ଦେବଗଡ଼ର ରାଜକୁମାର ହାଇସ୍କୁଲ (ପରବର୍ତ୍ତୀ ନାମ ବାସୁଦେବ ସୁଢ଼ଳଦେବ ହାଇସ୍କୁଲ) ରେ ସ୍କୁଲ ଶିକ୍ଷା ପରେ ସେ ଗଙ୍ଗାଧର ମେହେର ମହାବିଦ୍ୟାଳୟ, ସମ୍ବଲପୁରରୁ ସ୍ନାତକ ଶିକ୍ଷା ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ତଥା ରାଧାନାଥ ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟ, କଟକରୁ ବି.ଏଡ୍. ଉପାଧି ଲାଭ କରିଥିଲେ । ଶ୍ରୀଯୁକ୍ତ କର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମାମୁଁ ଦୟାନନ୍ଦ ଶତପଥୀଙ୍କ ଆଦର୍ଶରେ ଗଭୀର ଭାବେ ଅନୁପ୍ରାଣିତ ହୋଇଥିଲେ ।

୧୯୫୪ ମସିହାରେ ଶିକ୍ଷକ ଭାବେ ଚାକିରୀ ଜୀବନ ଆରମ୍ଭ କରି ପରବର୍ତ୍ତୀ ସମୟରେ ସେ ପ୍ରଧାନ ଶିକ୍ଷକ ଓ ଶିକ୍ଷା ବିଭାଗର ବିଭିନ୍ନ ପ୍ରଶାସନିକ ପଦପଦବୀରେ ଅଧିଷ୍ଠିତ ହୋଇ ୧୯୯୧ ମସିହା ଜାନୁଆରୀ ମାସ ୩୧ ତାରିଖ ଦିନ ଅବସର ଗ୍ରହଣ କରିଥିଲେ । ଅବସର ଗ୍ରହଣ ପରେ ସେ ସାରସ୍ୱତ ସାଧନା ତଥା ସମାଜସେବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ଅଦ୍ୟାବଧି ତାଙ୍କର ତିନୋଟି ପୁସ୍ତକ '*Illustrious Sons of Sambalpur*', 'ଖୋଲା ଝରକା' ଓ 'ସାମ୍ପ୍ରତିକ ଶିକ୍ଷା ଓ ସମାଜ' ଏବଂ ଅଗଣିତ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।



SUKH DUKH PUBLICATION

ISBN 81 -902499-2-4

Rs. 75/-